# ମଂଗଳ ଅମଂଗଳ ବିଲ୍ୱମଂଗଳ

ବିଜୟ କୁମାର ଶତପଥୀ



# ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ

(ମୁକ୍ତଧାରାର ଶୈଳୀରେ ରଚିତ ନାଟକ)

*ନାଟ୍ୟକାର :*

**ବିଜୟ କୁମାର ଶତପଥୀ**




କଟକ - ୨

**ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ**
(ମୁକ୍ତଧାରାର ଶୈଳୀରେ ରଚିତ ନାଟକ)

ନାଟ୍ୟକାର :
**ବିଜୟ କୁମାର ଶତପଥୀ**

ପ୍ରକାଶକ :
**ଅଗ୍ରଦୂତ,**
ବାଙ୍କାବଜାର, କଟକ- ୨

ପ୍ରଥମ ସଂସ୍କରଣ :
ବଡ଼ଦିନ, ଡିସେମ୍ବର **୨୦୧୧**

କମ୍ପ୍ୟୁଟର ସହାୟତା :
**ଏମ୍. ପ୍ରିଣ୍ଟର୍ସ,** କଟକ-୨

ପ୍ରଚ୍ଛଦ ଶିଳ୍ପୀ : ଡକ୍ଟର ଗୌରହରି ରାଉତ

ମୁଦ୍ରଣ :
**ମା'ତାରିଣୀ ପ୍ରିଣ୍ଟର୍ସ,** କଟକ

ମୂଲ୍ୟ : **ଟ. ୬୦/-**

**MANGALA AMANGALA BILWYAMANGAL**

Dramatist :
**Bijoy Kumar Satpathy**

Publisher :
**Agraduta**, Cuttack-2

First Edition :
X-Mas, 25th December,**2011**

DTP :
M. Printers, Cuttack-2

Cover Design : Dr. Gourhari Raout

Price : **₹ 60/-**

ମୋ ଅଞ୍ଚଳର ଯାବତୀୟ ପରିବର୍ତ୍ତନକୁ ଯିଏ
କେଉଁ ସୁଦୂର ଅତୀତରୁ ଦେଖି ଆସିଛନ୍ତି
ପୁଣି
ମୋର ସଂଘର୍ଷମୟ ଜୀବନ, ଦୁଃଖାବହ ଘଟଣାଗୁଡ଼ିକର ଯିଏ
ମୂକସାକ୍ଷୀ
ସିଂହାପୁରର ସେଇ ପରମାରାଧ ଜଳଶାୟୀ ବିଷ୍ଣୁପ୍ରତିମା
ବର୍ଷକରେ ଥରେ ଯାହାଙ୍କର ଆବିର୍ଭାବ ଘଟେ ପଣା ସଂକ୍ରାନ୍ତିଠାରୁ ମାତ୍ର
ତିନିଦିନ ପାଇଁ
ତାଙ୍କରି ପାଦପଦ୍ମ ତଳେ ନିବେଦିତ ଉକ୍ତ ନାଟକଟି...

... ନାଟ୍ୟକାର

(ମୁକ୍ତଧାରାର ଶୈଳୀରେ ରଚିତ ଏହି ନାଟକରେ ଉପେନ୍ଦ୍ରଭଂଜଙ୍କର 'ପ୍ରେମସୁଧାନିଧି', ରାମଦାସଙ୍କର 'ଦାର୍ଢ୍ୟତାଭକ୍ତି' ଓ ନାଟ୍ୟକାରଙ୍କର ରଚିତ ଗୀତ ଗୁଡ଼ିକ ସଂଯୋଜନା କରାଯାଇଛି ।)

# ଆତ୍ମନେପଦୀ

'ମଂଗଳ ଅମଂଗଳ ବିଲ୍ୱମଂଗଳ' ନାଟକଟି ମୁଁ ଲେଖିଥିଲି ୧୯୯୪ ମସିହା ବେଳକୁ । ସେତେବେଳେ ରେଭେନ୍ସା କଲେଜର ଓଡ଼ିଆ ବିଭାଗରେ ରିଡ଼ର ଭାବରେ ମୁଁ କାମ କରୁଥାଏ । ଅଧ୍ୟକ୍ଷ ଥାଆନ୍ତି ସଂସ୍କୃତିପ୍ରାଣ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରପ୍ରାପ୍ତ ବିଶିଷ୍ଟ ପ୍ରାବଂଧିକ ଓ ନାଟ୍ୟକାର ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି । ରେଭେନ୍ସା ମହାବିଦ୍ୟାଳୟର ପରିସରରେ ଅନୁଷ୍ଠିତ ବିଭିନ୍ନ ସଭା, ସମିତି ଓ ବିଭାଗ ଗୁଡ଼ିକ ତରଫରୁ ଆୟୋଜିତ ସେମିନାର ଗୁଡ଼ିକ ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ହେଉଥାଏ । ନାଟ୍ୟ ସଂସଦର ବାର୍ଷିକ ଉତ୍ସବ, ହଷ୍ଟେଲଗୁଡ଼ିକରେ ବାର୍ଷିକ ଉତ୍ସବ ପୁଣି ବିବିଧ ବିଭାଗ ଗୁଡ଼ିକର ବାର୍ଷିକ ଉତ୍ସବରେ ଯେଉଁ ସାଂସ୍କୃତିକ କାର୍ଯ୍ୟକ୍ରମମାନ ହେଉଥାଏ ସେଥିରେ ଉଚ୍ଚମାନର ସଂଗୀତ ଓ ନାଟକ ପରିବେଷଣ କରିବା ପାଇଁ ସେ ନିର୍ଦ୍ଦେଶ ଦେଇଥାନ୍ତି । ଆଜି ମନେପଡୁଛି ରେଭେନ୍ସା କଲେଜ ପରିସରରେ ସେ ରେଭେନ୍ସା ସିମ୍ଫୋନୀ ନାମକ ଏକ ସାଂସ୍କୃତିକ ଅନୁଷ୍ଠାନ ଗଠନ କରିଥିଲେ । ସେ ସମୟରେ କଳା ସଂଗୀତ ଓ ନାଟକପ୍ରିୟ ଅନେକ ଛାତ୍ର ଛାତ୍ରୀ ଅଧ୍ୟାପକ ଓ ଅଧ୍ୟାପିକାଙ୍କ ସହଯୋଗ ନେଇ ଅଧ୍ୟକ୍ଷ ପ୍ରଫେସର ମହାନ୍ତି କେତେ ଗୁଡ଼ିଏ ସଂଗୀତ, ନୃତ୍ୟ ଓ ନାଟକ କାର୍ଯ୍ୟକ୍ରମ ଏହା ମାଧ୍ୟମରେ ପରିବେଷଣ କରାଇଥିଲେ । ତାଙ୍କରି ନିର୍ଦ୍ଦେଶରେ ମୁଁ ସତ୍ୟବାଦୀ ଯୁଗର ବରେଣ୍ୟ ସାଧକ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଲୋକପ୍ରିୟ କବିତା 'କାଳିଜାଈ'ର ନାଟ୍ୟରୂପ ପ୍ରସ୍ତୁତ କରିଥିଲି ଓ ଏହା ରେଭେନ୍ସା ମହାବିଦ୍ୟାଳୟର ଅଡ଼ିଟୋରିୟମରେ ସଫଳତାର ସହ ମଂଚସ୍ଥ ହୋଇଥିଲା । ନାଟ୍ୟନିର୍ଦ୍ଦେଶନା ଓ ସଂଗୀତ ନିର୍ଦ୍ଦେଶନା ନିଜେ ଦେଇଥିଲେ ପ୍ରଫେସର ମହାନ୍ତି ।

ସେତେବେଳେ ଗୋଟିଏ ମାତ୍ର ମହିଳା ଛାତ୍ରାବାସ ଥାଏ ରେଭେନ୍ସା ମହାବିଦ୍ୟାଳୟର କ୍ୟାମ୍ପସ୍‌ରେ । ଏହାର ବାର୍ଷିକ ଉତ୍ସବ ନିମିତ୍ତ ନୂଆ ଧରଣର ନାଟକ

ଲେଖିବା ପାଇଁ ମତେ ସେ ନିର୍ଦ୍ଦେଶ ଦେଇଥିଲେ । ମେଲୋଡ଼ି ବା ଆଜେବାଜେ ପ୍ରକାରର ସାଂସ୍କୃତିକ କାର୍ଯ୍ୟକ୍ରମ ଛାତ୍ର ଛାତ୍ରୀ ମାନଙ୍କର ମାନସିକତାର ବିକାଶରେ ସହାୟକ ହୁଏ ନାହିଁ ବରଂ ଏହା ସେମାନଙ୍କର ସୃଜନଶୀଳତାର ବିକାଶ ପଥରେ ଅନ୍ତରାୟ ସୃଷ୍ଟିକରେ- ଏହା ଥିଲା ଅଧ୍ୟକ୍ଷ ପ୍ରଫେସର ମହାନ୍ତିଙ୍କ ଅଭିମତ । ସେଥିପାଇଁ ଛାତ୍ରଛାତ୍ରୀମାନଙ୍କର ସାଂସ୍କୃତିକ କାର୍ଯ୍ୟକ୍ରମରେ ଉଚ୍ଚାଙ୍ଗ ସଂଗୀନ ପରିବେଷଣ ଓ ନବମୂଲ୍ୟବୋଧର ନାଟକମାନ ପରିବେଷଣ ଉପରେ ସେ ଗୁରୁତ୍ୱ ଆରୋପ କରୁଥିଲେ । ଏପରି ଏକ ପରିସ୍ଥିତି ଓ ପରିବେଶରେ ମୁଁ ଲେଖିବାରେ ମନୋନିବେଶ କରିଥିଲି- 'ମଂଗଳ ଅମଂଗଳ ବିଲ୍ୱମଙ୍ଗଳ' ନାଟକ । ନାଟକର କଳେବର ମଧ୍ୟରେ ସଂଯୋଜିତ କରିବା ପାଇଁ ଚାହିଁଥିଲି ନୃତ୍ୟ, ଗୀତ । ୧୯୯୫ ମସିହାରେ ଏହା ମହିଳା ଛାତ୍ରାବାସର ବାର୍ଷିକ ଉତ୍ସବରେ ମଂଚସ୍ଥ ହୋଇଥିଲା ।

ବହୁତ ଦିନ ତଳେ 'ଦାର୍ଢ଼ତ୍ୟାଭକ୍ତି' ଓ କବି ବୈକୁଣ୍ଠନାଥଙ୍କ କବିତାରୁ ବିଲ୍ୱମଂଗଳଙ୍କ ବୃତ୍ତାନ୍ତ ପଢ଼ିଥିଲି । ଏହା ମତେ ଖୁବ୍ ପ୍ରଭାବିତ କରିଥିଲା । ପରେ ବଂଗୀୟ କବି ଲୀଳାଶୁକଙ୍କର 'ବିଲ୍ୱମଙ୍ଗଳ' ପଢ଼ିଥିଲି ଓ ପ୍ରବୃତ୍ତି ପ୍ରବଣ ବିଲ୍ୱମଂଗଳ କିପରି ଶ୍ରେଷ୍ଠ ଭକ୍ତରେ ରୂପାନ୍ତରିତ ହୋଇଥିଲେ ବିଭିନ୍ନ ସୂତ୍ରରୁ ଏ ସଂପର୍କରେ ଉପାଦାନ ସଂଗ୍ରହ ଦିଗରେ ମନୋନିବେଶ କରିଥିଲି ।

ମୋ ପଠିତ ବିଭିନ୍ନ କାବ୍ୟ କବିତାର କଥାନକ ଗୁଡ଼ିକ ମଧ୍ୟରେ ଘଟଣା ଓ ଚରିତ୍ରନେଇ କିଛି କିଛି ପାର୍ଥକ୍ୟ ରହିଥିଲେ ସୁଦ୍ଧା ମୁଖ୍ୟ ଚରିତ୍ର ବିଲ୍ୱମଂଗଳ ମଧ୍ୟରେ ସେ କିପରି ପ୍ରବୃତ୍ତିର ମାର୍ଗ ପରିହାର କରି ନିବୃତ୍ତି ମାର୍ଗରେ ପହଂଚିଲେ ତାହା ହିଁ ପ୍ରାୟ ପ୍ରତ୍ୟେକ ସ୍ରଷ୍ଟା ଦେଖାଇଦେବାପାଇଁ ଚାହିଁଛନ୍ତି ।

କୃଷ୍ଣଭକ୍ତି ଆନ୍ଦୋଳନର ପୃଷ୍ଠଭୂମି ବିଲ୍ୱମଂଗଳଙ୍କ ପରି ଚରିତ୍ର ସୃଷ୍ଟିରେ ଯେ ସହାୟକ ହୋଇଛି ଏଥିରେ ସନ୍ଦେହ ନାହିଁ । ଏହି ଚରିତ୍ର ମଧ୍ୟରେ ଯେଉଁ ସତ୍ୟ ନିହିତ ତାହାହେଲା ପ୍ରବୃତ୍ତିର କଳଂକିତ ମାର୍ଗ ତେଜି ନିବୃତ୍ତି ମାର୍ଗରେ ଗତିକଲେ କୃଷ୍ଣ ପ୍ରାପ୍ତି ସମ୍ଭବ । ମୋଟ ଉପରେ ବିଲ୍ୱମଂଗଳଙ୍କ ଚରିତ୍ରର ରୂପାନ୍ତର ହିଁ ସବୁଠାରୁ ଚିତ୍ତାକର୍ଷକ । ତେବେ ମୁଁ ନାଟକ ଲେଖିଥିଲାବେଳେ କାହାଣୀ ଓ ଚରିତ୍ର ଗୁଡ଼ିକ ମଧ୍ୟରୁ ଧର୍ମର ଖୋଳପାକୁ ଉତାରି ଦେବାପାଇଁ ଚାହିଁଛି । ସେମାନଙ୍କ କ୍ରିୟା କଳାପ ଓ ରୂପାନ୍ତର ମଧ୍ୟଦେଇ ସେମାନେ ଜୀବନର ଏକ ନିଷ୍ଠୁର ସତ୍ୟକୁ ମୁକାବିଲା କରିବା ପାଇଁ କିପରି ଚାହିଁଛନ୍ତି ତାହା ମୁଁ ଦର୍ଶାଇଛି । ଜୀବନର ମୋଡ଼ ପରିବର୍ତ୍ତନ କରିଦେଉଥିବା ଗୋଟିଏ ଗୋଟିଏ ଘଟଣା ହୋଇପାରେ ମଂଗଳର ସୂଚକ କିମ୍ବା ଅମଂଗଳର ବାର୍ତ୍ତାବହ । ପୁଣି

ମଂଗଳ ଓ ଅମଂଗଳ – ଏ ଦୁଇଟି ବି ଗୋଟିଏ ବିନ୍ଦୁରେ । ଏହା ମଧ୍ୟରେ ପାର୍ଥକ୍ୟର ସୀମା ଟାଣିହେବ ନାହିଁ । ସବୁ ମନର କଳ୍ପନା । ରୂପାନ୍ତର ହେଉଛି ସତ୍ୟ ଓ ସମୟ ଆଣେ ରୂପାନ୍ତରର ବିସ୍ମୟ – ନାଟକରେ ମୁଁ ଏହା ପ୍ରତିପାଦନ କରିବା ପାଇଁ ଚାହିଁଛି ।

ବିଲ୍ୱମଂଗଳ ଥିଲେ କାମୁକ, ହେଲେ ଭକ୍ତଶ୍ରେଷ୍ଠ ପୁଣି ମହାପ୍ରଭୁ ବିଲ୍ୱମଂଗଳ । ଏଇ ଧରାବଂଧା କାହାଣୀର ଫ୍ରେମ୍‌କୁ ମୁଁ ଭାଙ୍ଗିଦେଇଛି । ନାଟକର ପରିସମାପ୍ତିରେ ବିଲ୍ୱମଂଗଳ କୃଷ୍ଣଦର୍ଶନ କଲାପରେ ଚିନ୍ତାମଣି ନିକଟକୁ ଆସି ତାକୁ ଗୁରୁବୋଲି ସ୍ୱୀକାର କରିବା ଓ ତାକୁ ଧର୍ମୀୟ ଭାବନା ତଥା ଆଦର୍ଶରେ ଉଦ୍‌ବୁଦ୍ଧ କରିବା ଆଦି ଘଟଣାରେ ମୁଁ ପରିବର୍ତ୍ତନ ସୃଷ୍ଟି କରିଛି । ଏହା ମଧ୍ୟରେ ନିହିତ ମିଥ୍‌ର ପୁନର୍ଗଠନ । ଏହା ସଂଗକୁ ମୁ ବିଲ୍ୱମଂଗଳ ମଧ୍ୟରେ ସୂଚିତ ଓ ପ୍ରତୀକିତ କରିବା ପାଇଁ ଚାହିଁଛି ପ୍ରବୃତ୍ତିର ପୀଡ଼ା ସହୁଥିବା ମଣିଷ ପାଇଁ ଏକ ବାର୍ତ୍ତା । ତେବେ ସେଇଠି କଥା ସରିଯାଇନି । ପ୍ରବୃତ୍ତି ମଧ୍ୟରୁ ନିବୃତ୍ତି ଆଡ଼କୁ ଗତି କରିବା ଓ ନିବୃତ୍ତି ମଧ୍ୟରେ ଥାଇ ପୁଣି ପ୍ରବୃତ୍ତିର ଝଂକାରରେ ଉଚ୍ଛକିତ ହେବା ଓ କଷ୍ଟ ପାଇବା – ଏହା ମଧ୍ୟରେ ଗତିକରେ ଜୀବନ । ମଂଗଳ ଓ ଅମଂଗଳ – ମଂଗଳ ମଧ୍ୟରେ ଅମଂଗଳର ରାହୁ ପୁଣି ଅମଂଗଳ, ଅଶୁଭର ପରିଧି ମଧ୍ୟରେ ମଂଗଳର ପବିତ୍ର ଉପଲବ୍ଧି– ଏହାକୁ ମୁଁ ଦୃଶ୍ୟରୂପ ଦେବା ପାଇଁ ଚେଷ୍ଟାକରିଛି ଏହି ନାଟକରେ । ୧୯୭୮ ମସିହାରେ ରଚିତ ଓ ୧୯୮୦ ମସିହାରେ ମଂଚସ୍ଥ ମୋର 'କଂସର ଆତ୍ମା' ଓ ତା ପୂର୍ବରୁ ୧୯୭୫ ମସିହାରେ ରଚିତ ମୋର ନାଟକ 'ଭଗ୍ନ ସହରର ଇତିବୃତ୍ତ'ରେ ମୁଁ ମୋର ସମକାଳର ନାଟ୍ୟ ପ୍ରବୃତ୍ତିଠାରୁ ବିଚ୍ୟୁତ ହୋଇ ଯେଉଁ ଉତ୍ତର ଆଧୁନିକ ନାଟ୍ୟଚିନ୍ତାର ପରିଚୟ ପ୍ରଥମେ ଦେଇଥିଲି ତାହା ଏ ନାଟକରେ ଯଥାର୍ଥ ଭାବରେ ବିକଶିତ ହୋଇଛି ବୋଲି ମୋର ବିଶ୍ୱାସ ।

ପ୍ରଥାବଦ୍ଧ ମିଥ୍‌କ୍ ଗଢ଼ଣକୁ ଭାଙ୍ଗିଦେଇ ଓ ମୁକ୍ତଧାରାର ନାଟ୍ୟରୀତି ଗ୍ରହଣ କରି ନୃତ୍ୟ, ଗୀତ, ବାଦ୍ୟର ଝଂକାର ସୃଷ୍ଟିକରି ଓ ମେଲୋଡ୍ରାମାଟିକ ପରିବେଶ ଗୁଡ଼ିକ ମାଧ୍ୟମରେ ମୁଁ ଯେଉଁ ବିଲ୍ୱମଂଗଳଙ୍କ କାହାଣୀ ଏ ନାଟକରେ କହିଛି ତାହା ଠିକ୍ ପୌରାଣିକ ଯୁଗର ବିଲ୍ୱମଂଗଳ କାହାଣୀ ନୁହେଁ । ତାହା ରୂପାନ୍ତର ମଧ୍ୟ ଦେଇ ସତ୍ୟର ଅନୁସଂଧାନ ଯାହା ଏହି ନାଟକ ପରି ମୋର ଆଉ କେତେକ ନାଟକରେ ଲକ୍ଷଣୀୟ । ଏ ଦିଗଟି ପ୍ରତି ମୁଁ ମୋ ନାଟକର ପାଠକ, ଦର୍ଶକ ଓ ଆଲୋଚକମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି । ଏ ନାଟକର ମଂଚାୟନ ସହିତ ଜଡ଼ିତ ସେତେବେଳର ହଷ୍ଟେଲ କର୍ମଚାରୀ, ଛାତ୍ରୀବୃନ୍ଦ ଓ ତାର ତତ୍ତ୍ୱାବଧାରିକା, ସହତତ୍ତ୍ୱାବଧାରିକାଙ୍କୁ ଏହି ଅବକାଶରେ ମୁଁ ସ୍ମରଣ କରୁଛି ଓ ସାଧୁବାଦ ଜଣାଉଛି । ଅଭିନୟର ପ୍ରଥମ ରଜନୀରେ

ନିପୁଣ ଭାବରେ ଏ ନାଟକଟିର ନିର୍ଦ୍ଦେଶନା ଦେଇଥିବାରୁ ପ୍ରିୟବଂଧୁ ନାଟ୍ୟକାର ଓ ନିର୍ଦ୍ଦେଶକ ଡକ୍ଟର କିଶୋର ମହାନ୍ତିଙ୍କ ନିକଟରେ ମୁଁ କୃତଜ୍ଞ । ଅନେକ ବର୍ଷର ବ୍ୟବଧାନ ପରେ ଉକ୍ତ ନାଟକଟିକୁ ମଂଚସ୍ଥ କରିବା ପାଇଁ ଚାହିଁଥିଲେ କଟକର ଜଣାଶୁଣା ଥିଏଟର ଗ୍ରୁପ୍ 'ତ୍ରିନେତ୍ର' । ଏହା ରବୀନ୍ଦ୍ର ମଣ୍ଡପଠାରେ ୨୪।୯।୨୦୧୧ରେ ଶ୍ରଦ୍ଧେୟ ଓମ୍‌ପ୍ରକାଶ ବେହେରାଙ୍କ ବଳିଷ୍ଠ ନିର୍ଦ୍ଦେଶନାରେ ଚିତ୍ତାକର୍ଷକ ଭାବରେ ମଂଚସ୍ଥ ହୋଇଥିଲା । 'ତ୍ରିନେତ୍ର'ର ପ୍ରିୟ ଅଭିନେତା, ଅଭିନେତ୍ରୀ ନୃତ୍ୟ, ସଂଗୀତ ନିର୍ଦ୍ଦେଶକ ଓ ଉପଦେଷ୍ଟା ତଥା ଶୁଭେଚ୍ଛୁଗଣ ଏଥି ନିମିତ୍ତ ମୋର ସ୍ମରଣୀୟ ହୋଇ ରହିବେ । ଓଡ଼ିଆ ନାଟ୍ୟ ସାହିତ୍ୟର ଯଶସ୍ୱୀ ସମୀକ୍ଷକ ପ୍ରଫେସର ସଂଘମିତ୍ରା ମିଶ୍ର ନାଟକଟିକୁ ରବୀନ୍ଦ୍ର ମଣ୍ଡପରେ ଦେଖି ଏହାର ଏକ ଆଲୋଚନା ଲେଖିଥିବାରୁ ତାଙ୍କୁ ଗଭୀର କୃତଜ୍ଞତା ଜଣାଉଛି । ଆଶାକରେ ପ୍ରକାଶିତ ନାଟକଟି ସୁଧୀସମାଜରେ ଆଦୃତ ହେବ । ଏଥିପାଇଁ ବିଶିଷ୍ଟ ପ୍ରକାଶନ ସଂସ୍ଥା 'ଅଗ୍ରଦୂତ'ର ମନ୍ମଥ ପଟ୍ଟନାୟକଙ୍କୁ ସାଧୁବାଦ ଜଣାଉଛି । ଅନୁଜପ୍ରତିମ ଚିତ୍ରଶିଳ୍ପୀ ଡକ୍ଟର ଗୌରହରି ରାଉତ ଏହାର ପ୍ରଚ୍ଛଦ ଆଙ୍କିଥିବାରୁ ତାଙ୍କୁ ମୋର ଶ୍ରଦ୍ଧା ଓ ଶୁଭେଚ୍ଛା ।

**ନାଟ୍ୟକାର**

## 'ମଂଗଳ ଅମଂଗଳ ବିଲ୍ୱମଂଗଳ'ର ପ୍ରଥମ ଅଭିନୟ ରଜନୀ

ସ୍ଥାନ : ରେଭେନ୍ସା ମହାବିଦ୍ୟାଳୟ ମହିଳା ଛାତ୍ରାବାସ ପରିସରର ମୁକ୍ତାକାଶୀ ମଂଚ,
ତା ୨୫।୩।୧୯୯୫

**ନାଟକର ବିଭିନ୍ନ ଭୂମିକାରେ :**

| | | |
|---|---|---|
| ସୂତ୍ରଧାର | - | ସୁଜାତା ପଟ୍ଟନାୟକ |
| ଚିନ୍ତାମଣି | - | ଅଂଶୁପ୍ରିୟା ଦାଶ |
| ବିଲ୍ୱମଂଗଳ | - | ସାଗରିକା ଶତପଥୀ |
| ଚଣ୍ଡବାହୁ | - | ପୂର୍ଣ୍ଣିମା ମହାନ୍ତି |
| ରସଶେଖର | - | ମୀନାକ୍ଷି ପଣ୍ଡା |
| ସାଧବ | - | ସୁଶ୍ରୀ ସଂଗୀତା ଦାସ |
| ସାଧବପତ୍ନୀ | - | ମମତା ସାହୁ |
| ସନାତନ | - | ଶ୍ରଦ୍ଧାଞ୍ଜଳି ମିଶ୍ର |
| ନଟୀ/ନିୟତି | - | ଶ୍ୱେତପଦ୍ମା ମିଶ୍ର |
| ନଟୀ | - | ସୁଷମା ଜୟସ୍ୱାଲ |
| ନର୍ତ୍ତକୀ/ଗୋପାଳ | - | ମାୟା ଦାସ |
| ନାଟ୍ୟ ନିର୍ଦ୍ଦେଶନା | : | କିଶୋର ମହାନ୍ତି |
| ପ୍ରସ୍ତୁତି ଓ ପ୍ରଯୋଜନା | : | ଅଧ୍ୟାପିକା ରଶ୍ମି ମିଶ୍ର ଓ ଅଧ୍ୟାପିକା କମଳପ୍ରଭା କାଂପାନୀ |
| ମଂଚ ପରିଚାଳନା | : | ବିଚିତ୍ରାନନ୍ଦ ମିଶ୍ର ଓ ଲୋକନାଥ ନାୟକ |
| ନୃତ୍ୟ ନିର୍ଦ୍ଦେଶନା | : | ଗୁରୁ ହରେକୃଷ୍ଣ ପାଢ଼ୀ |
| ସଂଗୀତ ନିର୍ଦ୍ଦେଶନା | : | ସୁଦର୍ଶନ ଦାସ, ଅନୀଲଜେନା ଓ ଅଜୟ କୁମାର ବାରିକ |

## 'ମଂଗଳ ଅମଂଗଳ ବିଲ୍ୱମଂଗଳ'ର ଦ୍ୱିତୀୟ ଅଭିନୟ ରଜନୀ

ସ୍ଥାନ : ରବୀନ୍ଦ୍ରମଣ୍ଡପ, ଭୁବନେଶ୍ୱର, ତା ୨୪।୯।୧୧

ନାଟ୍ୟ ନିର୍ଦ୍ଦେଶନା : ଓମ୍ ପ୍ରକାଶ ବେହେରା

ନିର୍ଦ୍ଦେଶନା ସହଯୋଗୀ : ବିଶ୍ୱନାଥ ମହାପାତ୍ର

ସଂଗୀତ ନିର୍ଦ୍ଦେଶନା : ଅଭିରାମ ଖୁଣ୍ଟିଆ

ନୃତ୍ୟ ନିର୍ଦ୍ଦେଶନା : ସୁସ୍ମିତା ସ୍ୱାଇଁ

ମଂଚ ପରିଚାଳନା : ରମେଶଚନ୍ଦ୍ର ପାଣିଗ୍ରାହୀ, ଚିତ୍ରସେନ ରାଉତ

ରୂପସଜ୍ଜା : ରାମକୃଷ୍ଣ ଚିତ୍ରାଳୟ, କଟକ

**ବିଭିନ୍ନ ଭୂମିକାରେ :**

ବିଲ୍ୱମଂଗଳ - ନାରାୟଣ ଚନ୍ଦ୍ର ସାହୁ

ସୂତ୍ରଧାର - ବିଶ୍ୱନାଥ ମହାପାତ୍ର

ରସଶେଖର - ତପନ କୁମାର ରଥ

ସାଧବ - ସମୀର ମିଶ୍ର

ସନାତନ - ଶୁଭ୍ରାଂଶୁ ଭୂୟାଁ

ଚଣ୍ଡବାହୁ - ଚିତ୍ରସେନ ରାଉତ

ନିୟତି - ସୁରେଶ ଚନ୍ଦ୍ର ସ୍ୱାଇଁ

ଗୋପାଳ - ସ୍ମୃତିରଂଜନ ସ୍ୱାଇଁ

ଚିନ୍ତାମଣି - ଅମିତା ଆଚାର୍ଯ୍ୟ

ନଟ - ଶୁଭଶ୍ରୀ ସୂତାର

ନଟୀ - ସୁସ୍ମିତା ସ୍ୱାଇଁ

ସାଧବପତ୍ନୀ - ମଧୁସ୍ମିତା ଓଝା

କଣ୍ଠ - ଅଭିରାମ ଖୁଣ୍ଟିଆ, ମୋନାଲୀ ମଧୁସ୍ମିତା

ବାଦ୍ୟଯନ୍ତ୍ର - ପ୍ରଫୁଲ୍ଲ କୁମାର ନାୟକ, କାର୍ତ୍ତିକ ମହାରଣା
ବିକାଶ କୁମାର ମିଶ୍ର, ସନ୍ତୋଷ କର

କୋରିଓଗ୍ରାଫି ଓ ନୃତ୍ୟ ପରିଚାଳନା : ନୃତ୍ୟ ଗୁରୁ ଡଃ ଚିତ୍ତ ସାହାଣୀ

(ସମଗ୍ର ମଞ୍ଚଟି ଦୁଇଗୋଟି ଭାଗରେ ବିଭକ୍ତ । ମଞ୍ଚର ସମ୍ମୁଖ ଅଂଶଠାରୁ ତାର ପଶ୍ଚାତ୍ ଭାଗର ଅଂଶଟି କିଛି ପରିମାଣରେ ଉଚ୍ଚ । ଏହି ଭାଗଟିକୁ ନିର୍ଦ୍ଦେଶକ ଚାହିଁଲେ ଏକ ଉଚ୍ଚା ପିଣ୍ଡି ଭାବରେ ବ୍ୟବହାର କରିପାରନ୍ତି । ମଞ୍ଚର ସମ୍ମୁଖ ଭାଗକୁ ଆସିଛି ଆଲୋକ । ଅନ୍ତରାଳରୁ କୌଣସି ଲୋକପ୍ରିୟ ଗୀତିନାଟ୍ୟର ସ୍ୱର ଝଙ୍କାର କିମ୍ବା ଅପେରାର କନ୍‌ସର୍ଟ ଶୁଣାଯାଇଛି । ଆସିଛନ୍ତି ନଟ ନଟୀ ଗୀତ ଗାଇ ନାଚି ନାଚି । ଏଠାରେ ପତରି ଶଉରା ନାଚର ଆଙ୍ଗିକକୁ ଗ୍ରହଣ କରାଯାଇ ପାରିବ ।)

ନଟ - ଜୁହାର କରୁଛୁ ଦେଖଣାହାରୀଙ୍କୁ । ସଭା ମଣ୍ଡନ କରିଥିବା ପିଲା କବିଲା, ବୁଢ଼ା ମିଣିପେ ମାଇପେ ସମସ୍ତିଙ୍କୁ ।

ନଟୀ - ଜୁହାର କରୁଛୁ ମାଆ ସାରଳାଙ୍କୁ, ଗଣାଧିପ ଗଣପତିଙ୍କୁ କାଳିଆ ଠାକୁର ଜଗନ୍ନାଥଙ୍କୁ, ଉମାପତି ମହେଶ୍ୱରଙ୍କୁ (ଗୀତ ଗାଇଛି) ।

ପ୍ରଥମେ ବନ୍ଦିଲି ଗଣପତିଙ୍କୁ ଲୋ
ଦ୍ୱିତୀୟେ ଜଗତପତି
ତୃତୀୟେ ବନ୍ଦିଲି ମାଆ ସାରାଳାଙ୍କୁ
ଚତୁର୍ଥରେ ଉମାପତି ।

ନଟ - ନଈରେ ଖେଳଇ ମୀନ ନାଗରୀ ଲୋ
ନଈରେ ଖେଳଇ ମୀନ
ପାହାନ୍ତି ପହରେ ସପନ ଦେଖିଲି
ମନ ହୁଏ ଛନ ଛନ ।
ମନ ହୁଏ ଛନ ଛନ ନାଗରୀ ଲୋ
ମନ ହୁଏ ଛନ ଛନ

କଥାଟେ କହିବି ଏଇ ସମାଜରେ
ଡେରିଥା, ଡେରିଥା କାନ ।

ନଟୀ - କଥା, କଥା..... କଥା..... କି କଥା କହିବୁ ବା... କହୁନୁ । ଏତେ ଛୋପରା ହଉଚୁ କ'ଣ ମ ? (ଗାଇଛି)

କି କଥା କହିବୁ ନାଗର ବରରେ
କି କଥା କହିବୁ କହ ।
କଥା କହି ଯଦି ଜଗତ ମୋହିବୁ
ଏଇଠାରେ ଦଣ୍ଡେ ରହ ।
ଏଇଠାରେ ଦଣ୍ଡେ ରହ ନାଗରରେ
ଏଇଠାରେ ଦଣ୍ଡେ ରହ
ସଭାଜନ ମନ ତୋଷିଲାପରିକା
ସୁଆଦିଆ କଥା କହ ।

ନଟ - କହୁଚି ଲୋ କହୁଚି । ମନ ମୋହୁଚି, ପ୍ରାଣ ତୋଷୁଚି । ରସ ରସିଆ କଥା, କଥା ପରେ ଲଥା - ତା ଉପରେ ମଧୁମାଳତୀ ଲତା... ପ୍ରାଣ ମିତଣୀର ମନବୋଧ ପାଇଁ କହୁଚି ପରାଣ ଉଛୁଳା କଥା । ଶୁଣିବୁ ଲୋ ଶୁଣିବୁ । କ'ଣ ଶୁଣିବୁ କହ ... କହ ଲୋ କହ ।

କଲୁରେଇ ବେଙ୍କ କଥା ?
ଚାରି ସଙ୍ଗାତ କଥା ?
ଚମ୍ପାବତୀ ମାଲୁଣୀ କଥା ?
କଟୁଆଳ ପୁଅ କଥା ?
ଆଉ... ମନୋହର ଫାଶିଆରା କଥା ?

(ନଟର ପ୍ରତ୍ୟେକ ବାକ୍ୟ ପରେ ନଟୀ ନାହିଁ, ନାହିଁ, କହୁଥିବ । ଶେଷରେ ନଟ ପଚାରିଛି)

ସବୁତ ମନାକଲୁ ଗୋରୀ । କ'ଣ ଶୁଣିବୁ କହ ?

ନଟୀ - ଏସବୁ କଥା ଶୁଣି ଶୁଣି ଚିଟା ଲାଗିଲାଣି । ନୂଆ କିଛି କହମ ନାଗର । (ଗୀତ ଗାଇ)

ନୂଆ କିଛି ଆଜି କହରେ ନାଗର
ନୂଆ କିଛି ଆଜି କହ
ଭକତି ରସର କଥା ପଦେ କହି
ମନ ମୋର ଆଜି ମୋହ ।

ନଟ - ଏଁ ଭକତି ରସ, ଭକତି ରସ ଆଡ଼କୁ ସିନା ବୁଢ଼ାବୁଢ଼ୀଙ୍କର ମନ ବଳେ । ତୋ ମନ କେବେଠୁ ହେଲାଣି ମ ।

ନଟୀ - ପ୍ରାଣ ସଙ୍ଗାତ ମୋ ପ୍ରାଣ ସଙ୍ଗାତ
ମତେ ଶୁଣାଅ ହରି କଥାମୃତ ।
ହରି କଥାରେ ମୋ ମନ ଥାଉ
ହା କୃଷ୍ଣ ବୋଲି ଜୀବ ଯାଉ ।

(କୃଷ୍ଣଙ୍କ ଉଦ୍ଦେଶ୍ୟରେ ନମସ୍କାର ଜଣାଇଛି । ଏହି ସମୟରେ ପ୍ରବେଶ କରିଛନ୍ତି ସୂତ୍ରଧାର । ସେ ନଟ, ନଟୀଙ୍କୁ ଦେଖି ଟିକିଏ ଅଟକି ଯାଇଛନ୍ତି । ପରେ ସ୍ମିତ ହସି ଦର୍ଶକମାନଙ୍କୁ ସମ୍ବୋଧନ କରି କହିଛନ୍ତି ।)

ସୂତ୍ରଧାର - ନମସ୍କାର ବନ୍ଧୁଗଣ ! ଦେଖିଲେତ ନଟ ନଟୀ ମୋ ମନକଥା ଠିକ୍ ଜାଣି ପାରିଛନ୍ତି । ଆମେ ଏଠି ଭକ୍ତିରସର ନାଟକଟିଏ କରିବୁ ।

ନଟ, ନଟୀ- ସତେ ନାଁ କ'ଣ ? ଆମେ ବି ସେଇଆ ଚାହୁଁ ।

ସୂତ୍ରଧାର - ନାଟକଟି ହେବ ବିଲ୍ୱମଙ୍ଗଳଙ୍କ ଚରିତକୁ ନେଇ । (ପରେ ଦର୍ଶକମାନଙ୍କୁ) ହଁ ଆଜ୍ଞା ! ଭକ୍ତ ବିଲ୍ୱମଙ୍ଗଳଙ୍କର କାହାଣୀ ...ତାଙ୍କ ମଂଗଳ ଆଉ ଅମଂଗଳର କାହାଣୀ । ନରକରେ ଘାଣ୍ଟି ହୋଇ ଅମୃତ ଆଲୋକକୁ ଯେ ସନ୍ଧାନ କରନ୍ତି ପୁଣି ଯାହାଙ୍କ ପାଇଁ ଅମୃତ ପାଲଟେ ହଳାହଳ, ସେଇ ମହାନ୍ ବିଲ୍ୱମଙ୍ଗଳ । ମୋର ଇଚ୍ଛା ନଟ, ନଟୀ ତାହା ପରିବେଷଣ କରିବେ ଆପଣମାନଙ୍କ ସମ୍ମୁଖରେ । ମୁଁ ଆସୁଚି

ଆଜ୍ଞା, ଆପଣମାନେ ତା' ହେଲେ ସେଇ ଭକ୍ତି ଗାଥା ଦେଖନ୍ତୁ ଓ ଶୁଣନ୍ତୁ । (ସୂତ୍ରଧାର ଚାଲିଗଲେ)

ନଟ, ନଟୀ- (ସମ୍ମିଳିତ ସ୍ୱରରେ ଗାଉଥିଲେ, ନୃତ୍ୟ ସହିତ ।)

ବିଲ୍ୱମଙ୍ଗଳ ହେ ବିଲ୍ୱମଙ୍ଗଳ
ତୁମେ ମଙ୍ଗଳ ତୁମେ ଅମଙ୍ଗଳ ।
ଅନ୍ଧାର ରାତିରେ ଆଲୋକର ରେଖା
ମରଣ ଦୁଆରେ ବିଜୟର ଟୀକା ।
ବିଲ୍ୱମଙ୍ଗଳ ହେ ବିଲ୍ୱମଙ୍ଗଳ
ତୁମେ ମଙ୍ଗଳ ତୁମେ ଅମଙ୍ଗଳ ।

(ସ୍ୱରବଦଳେଇ ଗାଇଛନ୍ତି)

ଜୀବନ ସାଗରେ ଏକାକୀ ନାଉରୀ
ନାଆ ନିଅ ତୁମେ ବାହି ।
ପରାଣ ସଙ୍ଗୀତ ଗାଇ ଗଲ ତୁମେ
ଆଲୁଅ ଅଂଧାରେ ରହି ......

(ନଟ ନଟୀ ଚାଲିଯାଇଛନ୍ତି । "ବିଲ୍ୱମଙ୍ଗଳ... ବିଲ୍ୱମଙ୍ଗଳ ! ତୁମେ ମଙ୍ଗଳ, ତୁମେ ଅମଙ୍ଗଳ, ହେ ବିଲ୍ୱମଙ୍ଗଳ" ! ଚତୁର୍ଦ୍ଦିଗ ପ୍ରତିଧ୍ୱନିତ ହୋଇ ଉଠିଛି ସମ୍ମିଳିତ ବାଦ୍ୟ ଯନ୍ତ୍ରର ଝଙ୍କାର ସହିତ । ମଂଚକୁ ବିଚିତ୍ର ଭଂଗୀରେ ନାଚିନାଚି ଆସିଛନ୍ତି ନିୟତି । ମୁହଁରେ ତାଙ୍କର ମୁଖା । ମୁଖାଟି ଦ୍ୱିଖଣ୍ଡିତ । ଗୋଟିଏ ଭାଗ ଅତ୍ୟନ୍ତ ଭୀଷଣାକୃତି କଦାକାର, ଅନ୍ୟ ଭାଗଟି କିନ୍ତୁ ସୁନ୍ଦର ଶୋଭନୀୟ । ନିୟତିକୁ ନିର୍ଦ୍ଦେଶକ ଚାହିଁଲେ ମୁଖାବଦଳରେ ଅଭିନେତାଙ୍କ ମୁଖମଣ୍ଡଳର ଅର୍ଦ୍ଧେକ ଅଂଶକୁ ଶୁଭସୂଚକ ଓ ବାକି ଅର୍ଦ୍ଧକୁ ଅଶୁଭସୂଚକ କରି ଚିତ୍ରିତ କରିପାରନ୍ତି । ଜୋର୍‌ରେ ରହସ୍ୟମୟ ଭାବରେ ହସୁଥିଲେ ନିୟତି ଓ ଉଦ୍ଦଣ୍ଡ ନୃତ୍ୟ ଭଂଗୀରେ ବିଂଚିଚାଲିଥିଲେ ଶୁଭ ଓ ଅଶୁଭର ସଂକେତମାନ । ଏହା ଭିତରେ ପ୍ରଥମ ଜୋନ୍ ଆଲୋକରେ ବୁଡ଼ି ଯାଇଛି । କେବଳ ପ୍ରତିଧ୍ୱନିତ ହୋଇଛି ମଂଗଳ ଅମଂଗଳ ବିଲ୍ୱମଙ୍ଗଳ-ଗୀତର ଝଂକାରଟି । ତାହା ଦୂରେଇ ଗଲାବେଳକୁ ଦ୍ୱିତୀୟ ଜୋନ୍ ଆଲୋକିତ ହୋଇଛି । ଦେଖାଯାଇଛି ଠିଆହୋଇଛନ୍ତି ଅନ୍ଧ ବିଲ୍ୱମଙ୍ଗଳ । ବଂଶୀର ମନମତାଣିଆ ସ୍ୱର ଭାସି ଆସିଛି ।)

ବିଲ୍ୱ – କିଏ ? କିଏ ଡାକୁଛି ମତେ ବାରମ୍ବାର... ତୁହାଇ ତୁହାଇ କାହାର ସ୍ୱର ମୋର ହୃଦୟ ତନ୍ତ୍ରୀକୁ ଆଲୋଡ଼ିତ କରୁଛି । ଅନ୍ଧ ବିଲ୍ୱମଙ୍ଗଳ ସେହି ଡାକରେ ବାରମ୍ବାର ଉଚ୍ଚକିତ ହେଉଛି । ପ୍ରାଣରେ ମୋର ସଞ୍ଚରି ଯାଉଛି ବଂଶୀର ଅପୂର୍ବ ମୂର୍ଚ୍ଛନା । ଇଏ କଣ ମୋର ଆତ୍ମାର ସ୍ୱର ?... ଅନେକ ଦିନରୁ ... ହଁ ଅନେକ ଦିନରୁ ସେହି ସ୍ୱର ଶୁଣିବା ପାଇଁ ମୁଁ ଅପେକ୍ଷା କରିଥିଲି । (କାନ୍ଦି ପକେଇ) ଏକ ଅଭିଶପ୍ତ ଜୀବନର ବୋଝ ବୋହି ମୁଁ ଚାଲିଥିଲି ଅନେକ ଦିନୁ । ଅଭିଶାପ - ଅମଙ୍ଗଳର ଅଭିଶାପ । ମୁଁ ଏଇ ଅଭିଶପ୍ତ ଦୁନିଆଁର ଅନ୍ଧ ବିଲ୍ୱ ମଙ୍ଗଳ । ଅମଙ୍ଗଳର ରାହୁ ମୁଁ ... ହେଲେ ଆଜି ଅମଙ୍ଗଳର, ଅଶୁଭର କଳା ରାତିଟା, ଯେମିତି ଦୂରେଇ ଯାଉଛି ।

(ଆଲୋକ କେନ୍ଦ୍ରୀଭୂତ ହୋଇଛି ବିଲ୍ୱମଙ୍ଗଳ ଉପରେ, ବିଲ୍ୱମଙ୍ଗଳ ମୁହଁରେ ହାତ ଢାଙ୍କି ବସିପଡିଛନ୍ତି । ଦ୍ୱିତୀୟ ଜୋନ୍‌ରେ ଦେଖାଦେଇଛି ରାଧାକୃଷ୍ଣଙ୍କର ଯୁଗଳ ନୃତ୍ୟ- ଏଠାରେ କୌଣସି ଶାସ୍ତ୍ରୀୟ କିମ୍ବା ଲୋକପ୍ରିୟ ସଙ୍ଗୀତର ଝଙ୍କାରକୁ ନିଆଯାଇ ପାରିବ ।)

ବିଲ୍ୱମଙ୍ଗଳ-(ଥମି ଯାଇଛି ଗୀତ ଓ ନୃତ୍ୟ) କାହିଁ ? କୁଆଡ଼େ ଗଲ ପ୍ରଭୁ ? କୁଆଡ଼େ ଗଲ ଅପ୍ରାକୃତ ପ୍ରେମ ମୂର୍ତ୍ତି ଜୟ ରାଧାହରି... କପଟ କରନାଁ ପ୍ରଭୁ । ତମ ପାଇଁ ସବୁ ତୁଚ୍ଛ କରିଦେଲି । ହେଲେ ତମେ ମତେ ପର କରିଦିଅନା । ମୁଁ... ମୁଁ ଅନ୍ଧ ହୁଏ ପଛକେ ମତେ ଥରେ ଧରାଦିଅ । କାଇଁ... କୁଆଡ଼େ ଗଲ ତୁମେ। କୋଉଠି ଲୁଚିଛ । ମତେ ପାପୀ ବୋଲି ଭାବୁଚ... ଏଇଆ ନା । ହଁ... ଠିକ୍ କଥା... ମୁଁ ନର୍କର ସର୍ବନିମ୍ନ ପାହାଚଯାଏ ଓହ୍ଲେଇ ଯାଇଛି । (ସେ ହାତରେ ମୁହଁ ଢାଙ୍କି କାନ୍ଦିବାକୁ ଲାଗିଛନ୍ତି । ଅନ୍ଧାର ହୋଇଛି ଦ୍ୱିତୀୟ ଜୋନ୍ । କିଛି ସମୟ ପାଇଁ ସଙ୍ଗୀତର ମୂର୍ଚ୍ଛନା ପରିବେଶକୁ ଆଚ୍ଛନ୍ନ କରି ରଖିଛି । ପ୍ରଥମଜୋନ୍‌ରେ ଆଲୋକ ଆସିବା ପରେ ବିଲ୍ୱମଙ୍ଗଳଙ୍କ ଅତୀତ ଜୀବନର ଦୃଶ୍ୟ ଉଦ୍‌ଭାସିତ ହୋଇଛି । ପ୍ରଥମ ଜୋନ୍ ଏବେ ପୁଷ୍ପ ବାଟିକା ଭାବରେ ବ୍ୟବହୃତ । ନୃତ୍ୟ ଗୀତର ଆସର ସେଠାରେ ଚାଲିଛି । ନର୍ତ୍ତକୀର ଅଙ୍ଗ ଭଙ୍ଗୀରେ ପ୍ରମତ୍ତ କାମନାର ଜୁଆର । ଅର୍ଦ୍ଧଶାୟିତ ବିଲ୍ୱମଙ୍ଗଳ ନୃତ୍ୟ

ଉପଭୋଗ କରିବା ସଙ୍ଗେ ସଙ୍ଗେ ମଦ୍ୟପାନ କରି ଚାଲିଛନ୍ତି । ନର୍ତ୍ତକୀ ଗାଇଛି-)

ଝରି ଝରି ଯାଏ ମଧୁ ଜୋଛନା
ପରାଣ ପ୍ରିୟ ମୋ ପାଶେ ଆସ ଆଜି
ଦୂରେଇ ଦୂରେଇ ଯାଅନା... ଯାଅନା ।
ଜୀବନେ ମରଣେ ଶୟନେ ସ୍ୱପନେ
ତୁମେ ମୋ କାମନା ବାସନା
ଝରି ଝରି ଯାଏ ମଧୁ ଜୋଛନା... ।
ମଳୟ ମଧୁରେ ଚଇତାଳି ବାଆ
ଅଧୀର କି ଆଜି ହୁଏନା... ହୁଏନା ।
ଝରିଝରି ଯାଏ ମଧୁ ଜୋଛନା... ଜୋଛନା
ପରାଣ ପ୍ରିୟ ମୋ ପାଶେ ଆସ ଆଜି
ଦୂରେଇ ଦୂରେଇ ଯାଅନା... ।

ବିଲ୍ୱମଙ୍ଗଳ-(ଠିଆ ହୋଇଛନ୍ତି, ହାତରେ ପାନପାତ୍ର) ଏ ରଙ୍ଗୀନ ସୁରା ସହିତ ଆଜିର ଆସରଟାକୁ ଆହୁରି ମତୁଆଲା କରିଦିଅ ପ୍ରିୟେ ! (ନର୍ତ୍ତକୀର ଚିବୁକ ସ୍ପର୍ଶକରି) ତମର ସୁନ୍ଦର ମୁହଁ ଚତୁର୍ଦ୍ଦଶୀର ଏ ଚାନ୍ଦକୁ ଯେମିତି ବିଦ୍ରୂପ କରୁଛି ।

ନର୍ତ୍ତକୀ - ଯୁବରାଜଯେ କ'ଣ କେତେବେଳେ କହନ୍ତି...

ବିଲ୍ୱମଙ୍ଗଳ - ନାଇଁ ନାଇଁ ମୁଁ ଠିକ୍ କହେ - ଆରେ ବନ୍ଦ କଲ କାହିଁକି ? ନାଚ ଆହୁରି ... ଆହୁରି ନାଚ ... ଖୁବ୍... ହାଃ. ହାଃ..... ଆସରଟାକୁ ଏକଦମ୍ ଜମେଇଦିଅ...

(ନାଚର ଆସର ଜମି ଆସୁଛି ପୁଣି । ଶୁଣାଯାଇଛି ଜଣେ ଅସହାୟା ନାରୀର କନ୍ଦନ ଏବଂ ତାକୁ ବଳାତ୍କାରରେ ଧରିଆଣୁଥିବା ଜଣେ ଲୋକର କଣ୍ଠସ୍ୱର । ବିଲ୍ୱମଙ୍ଗଳ ତାକୁ ପ୍ରଥମେ ଉତ୍କର୍ଣ୍ଣ ହୋଇ ଶୁଣିଛନ୍ତି । ପୁଣି ଯେତେବେଳେ ଆର୍ତ୍ତ ଚିତ୍କାର

ପୂର୍ବଠାରୁ ଜୋରରେ ଶୁଣାଉଛି ସେ ଜୋରରେ ପାଟି କରିଛନ୍ତି ।) ବନ୍ଦ କର ଏଁ ନାଚ ଗୀତ । ଯାଃ... ତଫାତ୍ ହୁଅ ସବୁ ।

(ନର୍ତ୍ତକୀ ଚାଲିଯାଇଛି । ଶୁଣାଯାଇଛି ସେ ନାରୀଟିର ଚାପା କ୍ରନ୍ଦନ ଓ କିଛି ଲୋକଙ୍କର କୋଳାହଳ । ଏଥର ପୂର୍ବ ଅପେକ୍ଷା ଏହା ଆହୁରି ସ୍ୱଷ୍ଟ ଓ ନିକଟତର ହୋଇ ଶୁଣାଯାଇଛି । କାତର କଣ୍ଠରେ ନାରୀଟି ଡାକି ଚାଲିଛି – 'କିଏ କୋଉଠି ଅଛ ମତେ ରକ୍ଷାକର' ତା ସହ ଲୋକମାନଙ୍କର କୋଳାହଳ – ଅସ୍ତ୍ରଶସ୍ତ୍ର ଧରି ଯୁଦ୍ଧ କରିବାର ଶବ୍ଦ । କିଛି ସମୟ ପରେ ଅବଗୁଣ୍ଠନବତୀ ଚିନ୍ତାମଣିର ହାତ ବଳପୂର୍ବକ ଧରି ମଞ୍ଚକୁ ପ୍ରବେଶ କରିଛି ଚଣ୍ଡବାହୁ । ଚିନ୍ତାମଣି ତା କବଳରୁ ମୁକୁଳି ଯିବାପାଇଁ ଆପ୍ରାଣ ଚେଷ୍ଟା କରୁଥାଏ ।)

ବିଲ୍ୱମଙ୍ଗଳ - (ଉଚ୍ଚକଣ୍ଠରେ) ଚଣ୍ଡବାହୁ ! (ଅବଗୁଣ୍ଠନବତୀ ଚିନ୍ତାମଣିକୁ ଆପାଦ ମସ୍ତକ ନିରୀକ୍ଷଣ କରିଛନ୍ତି) ଏ କିଏ ଚଣ୍ଡବାହୁ... ?

ଚଣ୍ଡବାହୁ - ଜୋର ଜବରଦସ୍ତ ତାକୁ ଉଠେଇ ଆଣିଲି କୁମାର... ଗଲା ରାତିରେ ଏହାର ବିବାହ ସରିଥିଲା... ସ୍ୱାମୀ ଆଉ ବରଯାତ୍ରୀଙ୍କ ଗହଣରେ ବିଚାରୀ ନଦୀ ପାର ହୋଇ ତା ଶାଶୁଘର ଗାଁକୁ ଯାଉଥିଲା ।

ବିଲ୍ୱମଙ୍ଗଳ - (ବ୍ୟଥିତ କଣ୍ଠରେ ଚିତ୍କାର କରି) ଚଣ୍ଡବାହୁ ! ... ଗୋଟେ ବିବାହିତା ନାରୀକୁ ତୁମେ ତା ସ୍ୱାମୀଠାରୁ ଛଡ଼େଇ ଆଣିଲ.. ଜାଣିଚ... ଜାଣିଚ ଏ ଜଘନ୍ୟ ଅପରାଧର ଶାସ୍ତି କ'ଣ ?

ଚଣ୍ଡବାହୁ - ଅପରାଧ ! ନାଁ ରାଜକୁମାର, ମୁଁ ଆଦେଶ ପାଳନ କରିଛି ମାତ୍ର । ପୁଷ୍ପ ବାଟିକାର ପ୍ରମୋଦ କକ୍ଷକୁ ଆଉସବୁ ଯୁବତୀମାନଙ୍କୁ ଆଣିଲାପରି ମୁଁ ଏହାକୁ ନେଇ ଆସିଛି । ଏଥିପାଇଁ ମୋର ଶାଣିତ ଖଡ଼୍‌ଗରେ ମୁଁ ବରପକ୍ଷର ଦୁଇ ତିନି ଜଣଙ୍କୁ ହତ୍ୟା କରିଛି... ବିଚାରୀ ଯାର ସ୍ୱାମୀଟି ଖୁବ୍ ଜୋରରେ ଆଘାତ ପାଇଛି ।

ବିଲ୍ୱମଙ୍ଗଳ-ଓଃ... ସ୍ତବ୍ଧ ହୁଅ ଚଣ୍ଡବାହୁ ! ଭୋଜପୁରର ରାଜକୁମାର ବିଲ୍ୱମଙ୍ଗଳ ଏଇମିତି ଆଦେଶ କେବେ ଦେଇ ପାରେନା । ରୂପପିପାସୁ ବିଲ୍ୱମଙ୍ଗଳ ତାର ପ୍ରମୋଦ କକ୍ଷକୁ ଏଇମିତି ଅସହାୟା ନାରୀମାନଙ୍କର କାତର ଅଶ୍ରୁରେ ସିକ୍ତ ହେବାକୁ କଦାପି ପସନ୍ଦ କରିପାରେନା... ନାଁ ।

ଚଣ୍ଡବାହୁ - କୁମାର !

ବିଲ୍ୱମଙ୍ଗଳ - ମୁଁ ତ ଚାହିଁଥିଲି ଏଇ ପ୍ରମୋଦ ବାଟିକା ରୂପସୀମାନଙ୍କର ନାଚ ଗୀତରେ ମୁଖରିତ ହୋଇଉଠୁ । ରୂପ ଓ ସୌନ୍ଦର୍ଯ୍ୟର ପିପାସା ନେଇ ମୁଁ ଖାଲି ଜୀବନ ଓ ଯୌବନର ଜୟଗାନ କରିଚାଲିଥାଏ । ଅସଂଖ୍ୟ ପକ୍ଷୀର କାକଳି ପରି ସେମାନେ ମୋ ଜୀବନ ବୃକ୍ଷଟିକୁ ମୁଖରିତ କରୁଥାନ୍ତୁ ।

ଚଣ୍ଡବାହୁ - ଭାବିଥିଲି ମୋର ଏ କାମକୁ କୁମାର ତାରିଫ୍ କରିବେ... ମତେ ଉପହାର ଦେବେ । କିନ୍ତୁ...

ବିଲ୍ୱମଙ୍ଗଳ - (ଆଦେଶ ଦେଇ) ଏଇ ମୁହୂର୍ତ୍ତରେ ତୁମେ ଯାଅ ଚଣ୍ଡବାହୁ । ନୌକାରୁ ଏ ନାରୀର ଆହତ ସ୍ୱାମୀକୁ ଆଣି ଚିକିତ୍ସା କର । ତା ପରେ... ହଁ ତା'ପରେ ଉଭୟଙ୍କୁ ନେଇ ସେମାନଙ୍କ ଘରେ ଛାଡ଼ି ଦେଇଆସ ।

ଚଣ୍ଡବାହୁ - ଏଇ ମୁହୂର୍ତ୍ତରେ ଆଦେଶ ପାଳନ କରୁଛି କୁମାର (ସେ ନିଷ୍କ୍ରାନ୍ତ ହୋଇଗଲା । ଅବଗୁଣ୍ଠନବତୀ ଚିନ୍ତାମଣି ପୂର୍ବପରି ଅଶ୍ରୁପାତ କରିଚାଲିଥାଏ । କଟିଯାଇଛି କିଛି ସମୟ ନୀରବରେ । ଚିନ୍ତାଗ୍ରସ୍ତ ହୋଇ ପଦଚାରଣ କରିଛନ୍ତି ବିଲ୍ୱମଙ୍ଗଳ । ପରେ ନିକଟବର୍ତ୍ତୀ ହୋଇଛନ୍ତି ଚିନ୍ତାମଣିର ।)

ବିଲ୍ୱମଙ୍ଗଳ - ବିଶ୍ୱାସ କର ଏଇଟା ଗୋଟେ ଦୁର୍ଯୋଗ । ଏଇଥିପାଇଁ ମୁଁ ଆଦୌ ଦାୟୀ ନୁହେଁ । ମତେ କ୍ଷମାକର ଯୁବତୀ...

(ସେ ଅପରାଧୀ ପରି ତଳକୁ ମୁହଁ କରିଛନ୍ତି ।)

ଚିନ୍ତାମଣି - (ତାର ଏହି କ୍ରନ୍ଦନ କ୍ରୋଧର ରୂପ ନେଇଛି, ଅବଗୁଣ୍ଠନ ଖୋଲି ଆହତ ଫଣୀପରି ସେ ଚାହିଁଛି ବିଲ୍ୱମଙ୍ଗଳଙ୍କୁ ।) କ୍ଷମା କରିବି... କାହାକୁ ଗୋଟିଏ ପଶୁକୁ, ରାକ୍ଷସକୁ... ନାଁ ଅଭିଶାପ ଦେବି... (ଏହା ମଧ୍ୟରେ ବିଲ୍ୱମଙ୍ଗଳ ମୁହଁ ଟେକି ଅବଲୋକନ କରିଛନ୍ତି ଚିନ୍ତାମଣିକୁ ।)

ବିଲ୍ୱମଙ୍ଗଳ - (ଚମକି ପଡ଼ିଲା ପରି) ତମେ... ସତ କୁହ ତମେ ସେଇ ନୁହଁ ତ ଯାହାକୁ ମୁଁ ସ୍ୱପ୍ନରେ ବାରମ୍ୱାର ଦେଖିଛି । ବାରମ୍ୱାର କଳ୍ପନାର ତୂଳୀ ନେଇ ଯାହାର ଛବି ମୁଁ ଆଙ୍କିଛି... ମନ ମନ୍ଦିରରେ ଯାହାକୁ ଦେବୀପରି ମୁଁ ପୂଜା କରିଛି ।

ଚିନ୍ତାମଣି - ଗୋଟାଏ ପାଗଳର ପ୍ରଳାପ ଶୁଣିବା ପାଇଁ ମୋର ଧୈର୍ଯ୍ୟ ନାହିଁ ।

ବିଲ୍ୱମଙ୍ଗଳ - (ସେହିପରି ଆତ୍ମହରା କଣ୍ଠରେ) ନାଁ ଦେବୀ ନାଁ... ଆଜି ମୋର ମନେ ହେଉଛି ତୁମେ ଯେମିତି ମୋର ଯୁଗ ଯୁଗର ପରିଚିତ । ଜନ୍ମ ଜନ୍ମାନ୍ତରର ସାଥୀ ... ତୁମ ନାଁ କ'ଣ ଦେବୀ... (ସେ ଆଗେଇ ଆସୁଥିଲେ ।)

ଚିନ୍ତାମଣି - ଅଭିନୟ ବନ୍ଦ କର । ମନେରଖ ଚିନ୍ତାମଣି ଏବେ ନବବଧୂ । ମତେ ପାପ ଆଖିରେ ଦେଖିଲେ ତୁମର ଅମଙ୍ଗଳ ହେବ ।

ବିଲ୍ୱମଙ୍ଗଳ - (ସ୍ୱପ୍ନ ଦେଖିଲାପରି) ଚିନ୍ତାମଣି... ଆଃ... ସତେ ଯେମିତି ଏ ନାଁ ମୋର ଅତି ପରିଚିତ ... କେତେ ଆପଣାର । ତେବେ ତମେ କହୁଚ ମୋର ଅମଙ୍ଗଳ ହେବ... ତମକୁ ପାପ ଆଖିରେ ଚାହିଁଲେ... ତେବେ କେଉଁଟା ପାପ କେଉଁଟା ପୁଣ୍ୟ ? ସେକଥା ବିଲ୍ୱମଂଗଳ ବୁଝେନି । ସେ ଖାଲି ରୂପର ସୌନ୍ଦର୍ଯ୍ୟର ପୂଜା କରେ ।

ଚିନ୍ତାମଣି - ପାପୀ ହୋଇନଥିଲେ, ମୋ' ଜୀବନଟାକୁ ନଷ୍ଟକରି ଦେବାଲାଗି ଚର ପଠେଇନଥାନ୍ତେ...

ବିଲ୍ୱମଙ୍ଗଳ - ନାଁ ଚିନ୍ତାମଣି ନାଁ... ତୁମକୁ କେମିତି ମୁଁ ବୁଝେଇବି... ମତେ ବିଶ୍ୱାସ କର । (ସେ ଆବେଗରେ ହାତ ଧରି ପକେଇବା ପାଇଁ ଯାଉଥିଲେ ପରେ ପ୍ରକୃତିସ୍ଥ ହୋଇ ରହିଗଲେ - ଚିନ୍ତାମଣି ବି ଘୁଞ୍ଚିଗଲା ଗୋଟେ ପାହୁଣ୍ଡ ।) ଓ... ନାଁ... ନାଁ ତୁମକୁ ମୁଁ ଛୁଇଁ ପାରିବିନି । ତମେ କୁଳବଧୂ... ଅନ୍ୟର ପତ୍ନୀ... ଚାଲ ମୁଁ ତୁମର ସ୍ୱାମୀଙ୍କ ନିକଟରେ ତମକୁ ଛାଡ଼ିଦେଇ ଆସେ... ।

ଚିନ୍ତାମଣି - କୁମାର !

ବିଲ୍ୱମଙ୍ଗଳ - ହଁ ଚିନ୍ତାମଣି । ମୋର ଅପରାଧ କ୍ଷମାକର । ଅନ୍ୟର ହାତ ଧରି ନଥିଲେ ଏ ବିଲ୍ୱମଙ୍ଗଳ ତମକୁ କୋଳେଇ ନେବା ପାଇଁ (ସାମାନ୍ୟ ଅଟକିଯାଇ) ହଁ... ହଁ... କୋଳେଇ ନେବାପାଇଁ ତାର ବାହୁଯୁଗଳ ପ୍ରସାରିତ କରିଦେଇଥାନ୍ତା । ହେଲେ ଆଜି... ଆଜି ସେ ଅନୁତପ୍ତ, ତମର ନାରୀତ୍ୱକୁ ସେ ନମସ୍କାର ଜଣାଉଛି । ଚାଲ ଚିନ୍ତାମଣି...

(ଆବେଗପ୍ରବଣ ହୋଇ) ତମେ ଦୂରରେ ଥିଲେ ବି ମୋର ଆପଣାର ଅତି ଆପଣାର... ମୋର ପଙ୍କିଳ ଜୀବନରେ ତୁମକୁ ଚିନ୍ତାକରି ମୁଁ ଏଣିକି ଶାନ୍ତି ପାଇବି, ଚାଲ...

(ପ୍ରଥମ ଜୋନ୍ ଅନ୍ଧାର ହେଲା – ଅନ୍ତରାଳରୁ ଶୁଣାଯାଉଥିଲା ଗୀତର ଝଙ୍କାର ।)

କେତେ ଦୂରେ ଚାନ୍ଦ କେତେ ଦୂରେ କୁମୁଦିନୀ

ପ୍ରୀତି ଅଭେଦ ତାଙ୍କର

ଯେତେ ଦୂରେ ଥିଲେ

ଯେ ଯାହାର ସେ ତାହାର।

(ପ୍ରବେଶ କରିଛନ୍ତି ନଟ ଓ ନଟୀ ଉଦ୍‌ବାଚ ହୋଇ ।)

ନଟୀ – (ନଟ ପ୍ରତି) ଧେତ୍‌ତେରିକି ମତେ ଏକଥା ଜମାରୁ ଭଲ ଲାଗୁନି ।

ନଟ – ଆଲୋ ହେ ! ଭଲ ଲାଗୁନି କଣ ! ଭକ୍ତ ବିଲ୍ୱମଙ୍ଗଳ ଚରିତ, ଭଲ ଲାଗୁନି ତତେ ? କ'ଣ ଯେ ତତେ କହିବି ?

ନଟୀ – ବାହା ହେଲା ମାଇପିଟାକୁତ ତା ଲୋକ ଉଠେଇ ଆଣିଲେ । ପୁଣି ସେ ଛାଡ଼ି ଦେଇ ଆସିବା ପାଇଁ କାହିଁକି କହିଲା ଯେ...

ନଟ – ସେ ସବୁ ବଡ଼ ଗହନ କଥାଲୋ ଗହନ କଥା । ବିଲ୍ୱମଙ୍ଗଳଙ୍କ ଭିତରଟା ସେଇମତି ନୁହେଁ ଲୋ । ଜାଣିଚୁ ଗୋଟିଏ ମହାପାପୀର ଅନ୍ତର ଭିତରେ ବି କୋଉଠି କେମିତି ଛପି ରହିଥାଏ ସୁନ୍ଦର ସୁବାସିତ ଫୁଲଟିଏ । ସେ ଫୁଲର ବାସ ଯେତେବେଳେ ଚହଟି ଯାଏନା... ପାପର ଅନ୍ଧାର କଟିଯାଏ... ସେ ପାଲଟି ଯାଏ ମହାପୁରୁଷ । (ଅଭିଭୂତ କଣ୍ଠରେ ଗାଇଛି ।)

କହଇ ଚଇତନ ବାଣୀ । ଶୁଣ ସୁମନ ଦଣ୍ଡପାଣି ।

ହରିର ଅନୁଗ୍ରହ ହେଲେ । ନିସ୍ତରେ ମହାପାପୀ ଭଲେ ।

ଯେ ଯେତେ ପାପୀ ଥାଏ ଜାଣ । ସେ ହୁଏ ତେତେ ପୁଣ୍ୟବାନ ।

ରୋଗୀର ବ୍ୟାଧି ହେଲେ ହତ । ଯେମନ୍ତ ହୁଏ ବଳବନ୍ତ ।

ଅପଥ ପାଶକୁ ନଯାଏ । ଚିର ଜୀବନ ସୁଖେ ରହେ ।

ନଟୀ - ହଉ ଗୋ ହଉ, ଦେଖିବା କେମିତି ମହାପାପୀ ବିଲ୍ୱମଙ୍ଗଳ ମହାଭକ୍ତ ପାଲଟୁଛନ୍ତି ।

(ପ୍ରବେଶ କରିଛନ୍ତି ସୂତ୍ରଧାର ।)

ସୂତ୍ରଧାର - ବିଲ୍ୱମଙ୍ଗଳ ଚରିତ ପରିବେଷଣରେ ବ୍ୟାଘାତ କାହିଁକି ନଟନଟୀ ।

ନଟ - ନଟୀ ମନକୁ କଥାଟା ପାଉନି ବୋଲିତ ତାକୁ ବୁଝାଉଥିଲି ।

ସୂତ୍ରଧାର - ଦର୍ଶକ ମାନଙ୍କ ନିକଟରେ ସମଗ୍ର କାହାଣୀଟି ଆଗ ଉପସ୍ଥାପିତ ହେଉ । ତମ ଭିତରେ କଣ ବଚସା ବଚନିକା ଏମିତି ସବୁ ଚାଲିଥିବ - ଦର୍ଶକ ମାନେ ବିରକ୍ତ ହେବେଣି । ଜାଣିଚନାଁ ନାଟକ ଦେଖିବା ପାଇଁ ଲୋକେ ଆଜିକାଲି କେତେ ବିମୁଖ । ଟି.ଭି., ଭିଡ଼ିଓ, ସିନେମା ଏସବୁ ନାଟକକୁତ ଖାଇଲା - ତମେ ଦିଟା ମଝିରେ ଏମିତି ଆସି ଯଦି ପାଲା ଲଗାଅନା... ଲୋକ ସବୁ ଉଠିଯିବେ । ପଇସା ଜମା ଉଠିବନି । ଆଉ ଡେରି ନକରି ଯେଉଁଠୁ ଛାଡ଼ିଥିଲ ସେଇଠୁ ଆରମ୍ଭ କର । (ଦର୍ଶକମାନଙ୍କ ପ୍ରତି) ଅବଶ୍ୟ ପ୍ରଥମେ ଅଂଧ ବିଲ୍ୱମଂଗଳକୁ ଆମେ ଉପସ୍ଥାପନ କରି ପରେ ତାଙ୍କ ଅତୀତର କାହାଣୀ କହିବାକୁ ଯାଉଛୁ । ଏଇଟା ଟିକେ ଅଡୁଆଲାଗୁଛି କି ଆପଣମାନଙ୍କୁ ? ନାଇଁ.. ନାଇଁ.. ତାଙ୍କରି ଅସ୍ତିତ୍ୱ ସବୁରି ଭିତରେ ପରା । ସେ ମଂଗଳ, ଅମଂଗଳର ସମାହାର.. ତାରି ପ୍ରତୀକ । ସେ ଏକ ଅନ୍ୱେଷଣ, ଏକ ପ୍ରକ୍ରିୟା (ନଟ ନଟୀକୁ) ହଉ, ଆଉ ବିଳମ୍ବରେ ପ୍ରୟୋଜନ ନାହିଁ । ଚରିତ ପରିବେଷଣ କର । ମୁଁ ଆସୁଛି । (ସେ ନିଷ୍କ୍ରାନ୍ତ ହୋଇଗଲେ ।)

ନଟ - (ନଟୀ ମୁହଁକୁ ଚାହିଁ) ଠିକ୍ କଥାଲୋ ଠିକ୍ କଥା । ଆଉ ଡେରି ନକରି ଆରମ୍ଭ କରିବା ।

(ସ୍ମିତ ହସିଛି ଓ ସେ ପାଲା ସ୍ୱରରେ ଆରମ୍ଭ କରିଛି, ପାଳି ଧରିଛି ନଟୀ । ନିର୍ଦ୍ଦେଶକ ଚାହିଁଲେ ଏଠାରେ କୀର୍ତ୍ତନ ସ୍ୱରକୁ ମଧ ନେଇପାରିବେ ।)

ସାଧୁ ଜନେ ହୋ ସାଧୁ ଜନେ

ସାଧୁ ଜନେ ହୋ ସାଧୁ ଜନେ

କାନ ଡେ଼ରି ଶୁଣୁଥାଅ ହରି କଥାକୁ
ହରି କଥାକୁ... ହରିକଥାକୁ
ନିସ୍ତରିବ ତୁମେ ଶୁଣି ଘୋର ପାତକୁ
ଘୋର ପାତକୁ... ହରି କଥାକୁ ।

(ନଟ କିଛି ସମୟ ରହିଗଲା ଓ ବର୍ଣ୍ଣନାତ୍ମକ ଭଙ୍ଗୀରେ ସ୍ୱରଲହର ଦେଇ କଥା ଆରମ୍ଭ କଲା ।)

ଏଥୁଅନ୍ତେ ବିଲ୍ୱମଙ୍ଗଳ ନବବଧୂ ଚିନ୍ତାମଣିକୁ ନେଇ ତାର ସ୍ୱାମୀ ସନାତନଙ୍କ ଘରେ ପହଞ୍ଚିଲେ । କ୍ଷମା ପ୍ରାର୍ଥନାବି କଲେ ତାଙ୍କ ସ୍ୱାମୀଙ୍କ ନିକଟରେ ନିଜର ଅପକର୍ମ ପାଇଁ । ସେମାନଙ୍କ ଦାମ୍ପତ୍ୟ ଜୀବନର ସୁଖମୟ ଭବିଷ୍ୟତ କାମନା କଲେ । କିନ୍ତୁ ବିଧିର ବିଧାନ ହେଲା ଅଲଗା । ସନାତନ ଆଉ ତାଙ୍କର ପତ୍ନୀକୁ ଗ୍ରହଣ କଲେ ନାହିଁ ।

(ନଟ ନ଼ଟୀ ଠିଆ ହୋଇଥିବା ଜୋନ୍‌ରେ ଆଲୋକ ନିର୍ବାପିତ ହେଲା । ଆସିଛି ଆଲୋକ ଦ୍ୱିତୀୟ ଜୋନ୍‌ରେ । ସେଠି ଠିଆ ହୋଇଛନ୍ତି ସନାତନ, ବିଲ୍ୱମଙ୍ଗଳ ଓ ଚିନ୍ତାମଣି ।)

ସନାତନ - (କ୍ଷୁବ୍‌ଧ କଣ୍ଠରେ କହୁଥିଲେ ବିଲ୍ୱମଙ୍ଗଳଙ୍କୁ) ନାଁ ଅସମ୍ଭବ... କୋଉ ମୁହଁ ନେଇ ତୁମେ ଏକଥା କହିବାକୁ ଆସିଛ ।

ବିଲ୍ୱମଙ୍ଗଳ - ଦେଖ ଯାହା ହୋଇଯାଇଛି ତାକୁ ଗୋଟେ ଦୁର୍ଘଟଣା ବୋଲି ଧରି ନିଅ। ମୋ ଅଜାଣତରେ, ଅଲକ୍ଷ୍ୟରେ ଏସବୁ ଘଟି ଯାଇଛି । ଚିନ୍ତାମଣିକୁ ସେଥିପାଇଁ ମୁଁ କ୍ଷମା ମାଗି ସାରିଛି ।

ସନାତନ - ସଫେଇ ଦବା ଜମା ଦରକାର ନାହିଁ । (ବିଦ୍ରୂପ କଣ୍ଠରେ) ଦେଖ ହୋ ଗୋଟେ ଲମ୍ପଟ ପୁରୁଷ ଆସିଛି ଆଉ ଗୋଟେ ବାରନାରୀ ପାଇଁ ଯୁକ୍ତି କରିବାକୁ । ତା ଅଇଁଠାକୁ ମୋ' ହାତରେ ଟେକି ଦେବା ପାଇଁ ।

ଚିନ୍ତାମଣି - (ଏଯାଏ ବିବ୍ରତ ହୋଇ ସବୁ ଶୁଣୁଥିଲା – ହଠାତ୍ ତା ଧୈର୍ଯ୍ୟର ବନ୍ଧ ଭାଙ୍ଗି ଯାଇଛି । ସେ ଚିତ୍କାର କରିଛି ।) ନାଁ... ଏସବୁ ମିଛ । ମିଛ ସ୍ୱାମୀ । ମୁଁ ପବିତ୍ର, ମତେ ଆପଣ ଗ୍ରହଣ କରନ୍ତୁ ସ୍ୱାମୀ । ତାଙ୍କର କିଛି ଦୋଷ ନାହିଁ ।

ସନାତନ - (ବିଦ୍ରୂପରେ) ସ୍ୱାମୀ - ଲାଜ ମାଡ଼େନା ତୁମକୁ ସ୍ୱାମୀ ବୋଲି ଡାକିବା ପାଇଁ ।

ବିଲ୍ୱମଙ୍ଗଳ - ସେ ତୁମର ହାତ ଧରିଛି । ଅଗ୍ନିକୁ ସାକ୍ଷୀ ରଖି ବିବାହ କରିଛି । ସ୍ୱାମୀ ବୋଲି ଡାକିବାରେ ତାର ଅପରାଧ କୋଉଠି ।

ସନାତନ - ସେ ବାଜେ କଥା ସବୁ କୁହନା ମୁଁ ତାକୁ ପ୍ରତ୍ୟାଖ୍ୟାନ କରୁଛି ।

ଚିନ୍ତାମଣି - (ଆଘାତ ପାଇ) ସ୍ୱାମୀ ! - ଏତେ ବଡ଼ ଶାସ୍ତି ମତେ ଦିଅନା । କୁହ ମୁଁ କୁଆଡ଼େ ଯିବି ? ତୁମେ ମୋର ଇହକାଳ ପରକାଳର ଦେବତା... ମତେ ଆଶ୍ରୟ ଦିଅ । ବଞ୍ଚିବାର ଅବଲମ୍ବନ ଦିଅ ।

ସନାତନ - (ପାଖକୁ ଯାଇ କ୍ରୁଦ୍ଧ ହୋଇ) ଓ... ବଞ୍ଚିବାର ଅବଲମ୍ବନ, ଛିଃ... ଲାଜ ନାହିଁ ତୁମକୁ ... ହଁ ତୁମର ବା ଅସୁବିଧା କ'ଣ ? ଏଇତ ପାଖରେ ତୁମର ଉପପତି - ରସିକ ବିଲ୍ୱମଙ୍ଗଳ । ଚାଲିଯାଅ ନିଶ୍ଚିନ୍ତରେ, ତାଙ୍କ ସହ ଜୀବନ ଯାପନ କର । ଆଉ ବିବାହ - ଅଗ୍ନିକୁ ସାକ୍ଷୀ ରଖି ହାତ ଧରିବା - ଆଜି ବୁଝୁଛି - ଏସବୁ ଥିଲା ଗୋଟେ ପ୍ରତାରଣା ।

ବିଲ୍ୱମଙ୍ଗଳ - (ଆହତ କଣ୍ଠରେ) ସନାତନ !

ଚିନ୍ତାମଣି - ନାଁ - ସ୍ୱାମୀ ନାଁ... ମୋ ଦେହ ମନ ସବୁ ତୁମର । ତୁମ ଛଡ଼ା ମୁଁ କାହାକୁ ଜାଣିନି । (ଗୋଡ଼ ଧରି) ମୋ ପାଇଁ ଏତେ ନିଷ୍ଠୁର ହୁଅନା... କୁହ ମୁଁ କଣ କରିଥାନ୍ତି ?

ସନାତନ - (ଗୋଡ଼ ଛାଡି ଦେଇଛି, ପଡ଼ିଯାଇଛି ଚିନ୍ତାମଣି ।) ଚାଲି ଯା' ମୋ ସାମ୍ନାରୁ...

ବିଲ୍ୱମଙ୍ଗଳ - (ଏ ଦୃଶ୍ୟ ଅସହ୍ୟ ହୋଇପଡ଼ିଛି ଯେମିତି ତାଙ୍କ ପାଇଁ ।) ସନାତନ... ତୁମେ କଣ କରୁଛ ସନାତନ । ଗୋଟିଏ ପବିତ୍ର ଫୁଲକୁ ଏମିତି ଗୋଡ଼ରେ ଦଳି ଦିଅନା । ମୋର ଅନୁରୋଧ ତୁମେ ଚିନ୍ତାମଣିକୁ ଗ୍ରହଣ କର । ସୁଖରେ ସଂସାର କର । ତୁମର ଜୀବନକୁ ସେ ସୁରଭିତ କରିବ – ମହିମା ମଣ୍ଡିତ କରିବ ।

ସନାତନ - ଯାଅହେ ଏ ଉପଦେଶଗୁଡ଼ା ତୁମକୁ ସାଜେ - ମୁଁ ତ୍ରିବାର ସତ୍ୟ କରିଛି – ତା ମୁହଁ ଚାହିଁବିନି ।

ଚିନ୍ତାମଣି - ସେ ଅପବାଦ ମତେ ଦିଅନା ସ୍ୱାମୀ । ମୋର କିଛି ଦୋଷ ନାହିଁ ।

ବିଲ୍ୱମଙ୍ଗଳ - ସନାତନ ! ତୁମେ ଗୋଟେ କାମ କର । (ଛୁରୀବଢ଼େଇ ଦେଇ) ଏଇ ନିଅ ଏ ଶାଣିତ ଛୁରୀ ମୋ ଛାତିରେ ବିଦ୍ଧ କର । ମତେ ଯାହା ଶାସ୍ତି ଦବ ଦିଅ । ହେଲେ ଚିନ୍ତାମଣିକୁ ତୁମେ ଗ୍ରହଣ କର ।

ସନାତନ - (ଛୁରୀ ଫିଙ୍ଗି ଦେଇ) କଣ ନରହତ୍ୟା ପାତକରେ ଭାଗୀ ହେବି ନା କଣ ? ଜାଣିଚ ବିଲ୍ୱମଙ୍ଗଳ, ସନାତନ ବ୍ରାହ୍ମଣର ବାପ ଗୋଟିଏ, ତା କଥା ବି ଗୋଟିଏ । ଯେତେ ଶୀଘ୍ର ପାରୁଚ ମୋ ଘରୁ ବାହାରିଯା । ନଚେତ୍ ଲୋକ ଲଗେଇ ଗଳା ଧକ୍‌କା ମାରି ତମ ଦିଟାଙ୍କୁ ମୁଁ ତଡ଼ି ଦେବି । (ସେ ଚାଲିଗଲା)

ଚିନ୍ତାମଣି - (ତା ଯିବା ବାଟକୁ ଚାହିଁ ଦି ପାଦ ଆଗେଇ ଯାଇ ବେଦନା ବିଧୁର କଣ୍ଠରେ) ନାଁ... ନାଁ ମତେ ଦୟା କର । ବିଶ୍ୱାସ କର ।

ବିଲ୍ୱମଙ୍ଗଳ - ସନାତନ ଚାଲିଗଲା ।

ଚିନ୍ତାମଣି - (କାନ୍ଦିଛି) ହଁ ସେ ଚାଲିଗଲେ... ସାଙ୍ଗରେ ନେଇଗଲେ ମୋର ମର୍ଯ୍ୟାଦା, ନାରୀତ୍ୱ, ସିନ୍ଦୂର ଗାର... । କୁହ ତେବେ କଣ ଏ ସବୁର ମୂଲ୍ୟ ? ତୁମର ଚରମାନେ ଯଦି ଏହାର ମୂଲ୍ୟ ବୁଝିଥାନ୍ତେ ସେମାନେ ମତେ ନୌକାରୁ ଉଠେଇ ଆଣି ନଥାନ୍ତେ । ତୁମ ପାଇଁ... ହଁ, ହଁ ତୁମ ପାଇଁ ମୋର ସର୍ବନାଶ ହୋଇଛି । (ସେ କାନ୍ଦି ଉଠିଛି ଜୋରରେ)

ବିଲ୍ୱମଙ୍ଗଳ - ଚିନ୍ତାମଣି !

ଚିନ୍ତାମଣି - କୁହ ମତେ ଗ୍ରହଣ କରିପାରିବ ତମେ ! ... କୁହ... ।

ବିଲ୍ୱମଙ୍ଗଳ - ଧର୍ମତଃ ତୁମେ ଅନ୍ୟ ଜଣକର ପତ୍ନୀ ଚିନ୍ତାମଣି ।

ଚିନ୍ତାମଣି - ଦେଖିଲତ ! ସେ ମତେ ପ୍ରତ୍ୟାଖ୍ୟାନ କଲେ । ଜାଣିଚି ତୁମେବି ମତେ ଗ୍ରହଣ କରିପାରିବନି- ତୁମର ମାନମର୍ଯ୍ୟାଦା ପ୍ରତିଷ୍ଠା ତୁମକୁ ବାଧା ଦେବ । (ପୂର୍ବଠାରୁ ଆହୁରି ଦୃଢ଼ ହୋଇ) ମୁଁ କିନ୍ତୁ ଏହାର ପ୍ରତିଶୋଧ ନେବି... ପ୍ରତିଶୋଧ... ।

ବିଲ୍ୱମଙ୍ଗଳ - ଚିନ୍ତାମଣି !

ଚିନ୍ତାମଣି - ହଁ... ହଁ କୁମାର... ପ୍ରତିଶୋଧ ନେବି ଏ ପୁରୁଷ ଜାତିଟା ଉପରେ... ରୂପର ରୋଷଣୀ ଜାଳି ସେମାନଙ୍କୁ ପ୍ରଲୁବ୍‌ଧ କରିବି - ପତଙ୍ଗ ପରି ସେମାନେ ସେଠି ଝାସ ଦେବେ । ମୁଁ ଖାଲି ନର୍କଗାମୀ ହେବିନି । କୁତ୍ସିତ ନର୍କର ସବା ଶେଷ ପାହାଚକୁ ଓହ୍ଲେଇ ଯାଇ ମୁଁ ସେମାନଙ୍କୁ ସେଠିକି ଟାଣି ନେବି ।

(ପାଗଳୀଙ୍କ ପରି ହସି ଉଠିଚି)

ବିଲ୍ୱମଙ୍ଗଳ - ନାଁ... ନାଁ ଚିନ୍ତାମଣି... ନାଁ ମୁଁ ତୁମକୁ ସେମିତି ରାସ୍ତାରେ ଯିବାକୁ ଦେବିନି ।

ଚିନ୍ତାମଣି - ମାନେ... ତୁମେ- ଏକଥା କହିବାକୁ କିଏ ?

ବିଲ୍ୱମଙ୍ଗଳ - (ଆବେଗରେ) ତୁମ ସହ ପ୍ରଥମ ଦେଖାରେ ମୁଁ ଭାବି ନେଇଛି ତୁମେ ମୋର ଜନ୍ମ ଜନ୍ମାନ୍ତରର ପରିଚିତ, ତୁମେ ମତେ ଦୂରେଇ ଦିଅନା ଚିନ୍ତାମଣି ।

ଚିନ୍ତାମଣି - (ବିଦ୍ରୂପ କଣ୍ଠରେ) ମତେ ହାତ ଧରି ପତ୍ନୀର ଗୌରବ ଦେବାର ସାହସ ତୁମର ନାହିଁ । ଅଥଚ କହିଚାଲିଛ ତୁମେ ମୋର ଜନ୍ମ ଜନ୍ମାନ୍ତରର ସାଥୀ । ତୁମେ ଗୋଟେ କ୍ଲୀବ କୁମାର । ସମାଜର ଧରାବନ୍ଧା ନିୟମ ଆଗରେ ସ୍ୱର ଉଠେଇବାର ସାହସ ତୁମର ନାହିଁ ।

ବିଲ୍ୱମଙ୍ଗଳ - ଚିନ୍ତାମଣି ! ମତେ ଭୁଲ ବୁଝନା... କୁହ ... କୁହ ମୁଁ ... କ'ଣ କରି ପାରିବି ?

ଚିନ୍ତାମଣି - କେହି କିଛି କରିବା ଦରକାର ନାହିଁ । ମୁଁ ସେ ରାସ୍ତା ବାଛି ନେଇଛି । ଏ ରାସ୍ତା ଧ୍ୱଂସ ହୋଇଯିବାର ରାସ୍ତା । ମୁଁ ଧ୍ୱଂସ ହୋଇଯିବି, ଧ୍ୱଂସ ବି କରିଚାଲିବି ଅନ୍ୟମାନଙ୍କୁ ।

ବିଲ୍ୱମଙ୍ଗଳ - ଚିନ୍ତାମଣି ?

ଚିନ୍ତାମଣି - ଯାଉଚି କୁମାର, ଜାଣେନା ପୁଣି ତୁମ ସହ କେବେ ମୋର ଦେଖା ହେବ । ଯାଉଚି...

(ସେ ପ୍ରଣାମ କରି କାନ୍ଦି କାନ୍ଦି ଚାଲିଗଲା ।)

ବିଲ୍ୱମଙ୍ଗଳ - (ଡାକି ଚାଲିଥିଲା) ଚିନ୍ତାମଣି ! ଚିନ୍ତାମଣି ! (କରୁଣ ସଙ୍ଗୀତର ମୂର୍ଚ୍ଛନା ପରିବେଶକୁ ଆଚ୍ଛନ୍ନ କରି ରଖିଲା କିଛି ସମୟ । ପରିବର୍ତ୍ତିତ ହେଲା ଆଲୋକ । ଆଲୋକ ଆସିଲା ଅନ୍ୟ ଜୋନ୍‌ରେ । ଠିଆ ହୋଇଛନ୍ତି ସୂତ୍ରଧାର । ମୁହଁରେ ସ୍ମିତ ହସ ।)

ସୂତ୍ରଧାର - ମତେ ପୁଣି ଆପଣଙ୍କ ନିକଟକୁ ଆସିବାକୁ ପଡ଼ିଲା ଆଜ୍ଞା ! ଆପଣମାନେ ହୁଏତ ଭାବୁଥିବେ ନଟ ନଟୀ ବିଲ୍ୱମଙ୍ଗଳ ଚରିତ ପରିବେଷଣ କରୁଛନ୍ତି... ମଝିରେ ଏ କୋଉଠୁ ଆସି... ଆସିବାକୁ ପଡୁଛି ଆଜ୍ଞା, ଏଇମିତି ବାଧ ହୋଇ । ଆପଣମାନେ ଯଦି ଭାବୁଥିବେ ଖାଲି ତୁଚ୍ଛା ମନୋରଞ୍ଜନ ପାଇଁ ବିଲ୍ୱ ମଙ୍ଗଳ ନାମକ ନାଟକଟିଏ ଆମେ ଏଠାରେ କରୁଛୁ - ସେଇଟା ଭୁଲ୍ ଆଜ୍ଞା । ବିଲ୍ୱ ମଙ୍ଗଳ ଯେମିତି ଆମ ପାଇଁ ଆମର ଅବକ୍ଷୟ, ପଚମାନ ମୂଲ୍ୟବୋଧ ପାଇଁ, ଦୁର୍ଦ୍ଦିନଗୁଡ଼ାକ ପାଇଁ... ଆଲୋକର, ଉତ୍ତରଣର ବାର୍ତ୍ତା ଆଣନ୍ତି । ସେ ପୁଣି ସୂଚାଇ ଦିଅନ୍ତି.. (ଅଳ୍ପହସି) ମୂଲ୍ୟବୋଧ ପରିବର୍ତ୍ତନଶୀଳ । କିଛି ଚିରନ୍ତନ ନୁହେଁ । ମୋଟା ମୋଟି... ସେ ଗୋଟାଏ ଉପଲବ୍ଧି । ଆଧ୍ୟାତ୍ମିକ ଆଉ ମାନସିକ ସଙ୍କଟ ଭୋଗୁଥିବା ମଣିଷ ପାଇଁ ସେ ଆଣନ୍ତି ନୂଆ ଜୀବନର ଛନ୍ଦ । ସେ ବାର୍ତ୍ତା ହେଉଛି ରୂପାନ୍ତରର । ତେବେ ରୂପାନ୍ତର କେଉଁଠି ସରିଯାଏନି । ଏଇମିତି ବିଲ୍ୱମଂଗଳ ମାନେ ବନ୍ଦୀ ହେଉଥାନ୍ତି ଆପଣାର କାମନା ବାସନା ନିକଟରେ । କରୁଥାନ୍ତି ବି ଆଲୋକର ସଂଧାନ । ପୁଣି ଘୋଟିଆସେ ପ୍ରବୃତ୍ତିର ଘନଘୋର ଅଂଧକାର । (ହସିଛନ୍ତି ଜୋରରେ) ହାଃ... ହାଃ... ହାଃ... ପ୍ରବୃତ୍ତି ପୁଣି ନିବୃତ୍ତିର ଖେଳ ... ବିଚରା ବିଲ୍ୱମଗଂଳ । ତେବେ... ସେଇ ରୂପାନ୍ତର ପାଇଁ କମ୍ ମାନସିକ ତାଡ଼ନା ସହିବାକୁ ପଡ଼େ ନାହିଁ... ଭୋଗିବାକୁ ପଡ଼େ ନାହିଁ କମ୍ ଶାରୀରିକ ଉତ୍‌ପୀଡ଼ନ - ସତ୍ୟ ହେଉଛି ଗୋଟେ ଅନ୍ୱେଷଣ - ଗୋଟାଏ ଦିଗହୀନ ଯାତ୍ରା - ଏହା ପ୍ରମାଣ କରି ଦିଅନ୍ତି ବିଲ୍ୱମଙ୍ଗଳ । (କିଛି ସମୟ ରହିଯାଇ) ମୁଁ ତା ହେଲେ ଆସୁଛି । ପୁଣି ଯଦି ଚରିତ ପରିବେଷଣ ବେଳେ ଆସିବାକୁ ପଡୁଥାଏ କିଛି ଖରାପ ଭାବିବେନି ଆଜ୍ଞା ।

(ସେ ମଞ୍ଚରୁ ନିଷ୍କ୍ରାନ୍ତ ହୋଇଗଲେ । ଆସିଲେ ନଟ ନଟୀ ଗୀତ ଗାଇ ନାଚି ନାଚି ସମ୍ମିଳିତ କୀର୍ତ୍ତନ ସ୍ୱରରେ ।)

ନଟ/ନଟୀ - ହରି ହରିହୋ ! ହରି ହରି

ଏ ଭବ ସାଗରୁ କର ପାରି ହୋ ! ହରି ହରି ।

ଏ ମାୟା ସଂସାର ଛାର

ଘନ ଘୋର ଅନ୍ଧକାର

ଜୀବ ଯାଉ ହୋ ! ନାମ ଗାଇ

ଲୋଡ଼ା ଆଉ କିଛି ନାହିଁ...ହୋ ହରି ହରି... ।

ରାଧା ମାଧବଙ୍କୁ ସ୍ମର ଜୀବନର ଦୁଃଖ ହର

କାଳଦଣ୍ଡ ଡରେ ଯିବ ମୁକତି ହେଲେ ଲଭିବ...

ଭବସାଗରୁ କର ପାରି ହୋ ହରି ହରି ।

ଧନ ମାନ ଯଉବନ ରୂପ ଯଶ କୀର୍ତ୍ତିମାନ

କାଳ ଫାଶେ ହୁଏ ଚୂର ଶିରୀ ହୁଏ ନାରଖାର....

ଭବସାଗରୁ କର ପାରି ହୋ ! ହରି ହରି ।

(ନଟନଟୀ ଏହା ପରିବେଷଣ କରିବା ସହ କିଛି ସମୟ ନାଚି ନାଚି ମଞ୍ଚରୁ ନିଷ୍କ୍ରାନ୍ତ ହେଲେ । ଅନ୍ତରାଳରୁ ସମ୍ମିଳିତ ସ୍ୱରରେ କିନ୍ତୁ ଶୁଣାଯାଉଛି ସେହି ସଂଗୀତ ଓ କୀର୍ତ୍ତନର ସ୍ୱର । ପ୍ରଥମ କୋନରୁ ଆଲୋକ ନିଭି ଆସିଲା ଓ ଦ୍ୱିତୀୟ କୋନ୍‌ରେ ଆଲୋକର ପ୍ଳାବନ । ପ୍ରବେଶ କରିଛି ରସଶେଖର ।)

ରସଶେଖର - (ବିରକ୍ତ ହୋଇ) ଆବେ ବନ୍ଦ କରବେ । ଶଳା କୀର୍ତ୍ତନ କଲେ ଏଠି । ସବୁ ବନ୍ଦ, ଆମ କୁମାର ବିଲ୍ୱମଙ୍ଗଳଙ୍କ ଆଦେଶରେ ହରିନାମ ସଂକୀର୍ତ୍ତନ ଏଠି ଚାଲି ପାରିବନି । କୀର୍ତ୍ତନ ଯଦି କରିବାକୁ ଚାହୁଁଛ ଚିନ୍ତାମଣି ନାମ ସଂକୀର୍ତ୍ତନ କର । ବିଲ୍ୱମଙ୍ଗଳଙ୍କ ପାଇଁ ମୁଁ ଚିନ୍ତାମଣି ନାଁରେ ଫାନ୍ଦି ଦି'ପଦ ଗୀତଟି ଲେଖି ଦେଇଛି । ଗୀତ ନାଁ ହେଲା ଚିନ୍ତାମଣି ସ୍ତୁତି । ସେ ଗାଇବାକୁ ଆରମ୍ଭ କରିଛି ।)

ଚିନ୍ତାମଣି ଚିନ୍ତାମଣି ଭଜ ମନ ଚିନ୍ତାମଣି

ଚିନ୍ତାମଣି ସତେ ଅବା ରୂପର ରୋଷଣୀ ।

ଧନ୍ୟ ମୋର ହୁଏ ପ୍ରାଣ ଗାଇ ତାର ଗୁଣଗ୍ରାମ
ଛାଡ଼ିଦିଅ ହରିନାମ ଗାଅ ଚିନ୍ତାମଣି ନାମ ।
ବୋଲମନ ଚିନ୍ତାମଣି, ବୋଲ ମନ ଚିନ୍ତାମଣି
ଚିନ୍ତାମଣି ଚିନ୍ତାମଣି ଭଜମନ ଚିନ୍ତାମଣି ।

(ରସଶେଖର ଉନ୍ମତ୍ତ ଭାବରେ ନୃତ୍ୟ କରିବାକୁ ଆରମ୍ଭ କରିଦେଇଥିଲା । ପ୍ରବେଶ କରିଛନ୍ତି ସନାତନ)

ସନାତନ - (ନୃତ୍ୟରତ ରସଶେଖରକୁ ଦେଖି କ୍ରୁଦ୍ଧ ହୋଇ) ମୂର୍ଖ, ପାଷାଣ୍ଡ, ଅପୋଗଣ୍ଡ !

ରସଶେଖର - (ରହିଯାଇ) କାହାକୁ କହୁଛ କିହୋ !

ସନାତନ - ଗୋଟେ ରୂପଜୀବୀର ନାଁ ଧରି ସଂକୀର୍ତ୍ତନ କରୁଥିବା ଜଣେ ମହାମୂର୍ଖକୁ ।

ରସଶେଖର - (ଆପାଦମସ୍ତକ ନିରୀକ୍ଷଣ କରି) ଓ... ତୁମ ନାଁ ସନାତନ ତାହେଲେ... ଆଚ୍ଛା ।

ସନାତନ - ଖାଲି ସନାତନ ନୁହେଁ ମୁଁ ମହାପଣ୍ଡିତ ସନାତନ ବିଦ୍ୟାଭୂଷଣ ବାହିନୀପତି ... ପାଖ ବ୍ରାହ୍ମଣ ଶାସନରେ ମୋ' ଘର ।

ରସଶେଖର- ନିଶ୍ଚୟ, ନିଶ୍ଚୟ - ତା ନ ହୋଇଥିଲେ ଭାରିଯାକୁ ତ୍ୟାଗପତ୍ର ଦିଅନ୍ତି କି ? ତୁମ ପାଇଁ ସେ ଆଜି ରୂପଜୀବୀ ।

ସନାତନ - ଚୁପ୍ କର । ଗୋଟେ ବେଶ୍ୟାର ସହ ମୋର ସଂପର୍କ କେବେ ନ ଥିଲା କି ଆଜି ନାହିଁ ।

ରସଶେଖର- ଆମେ କିନ୍ତୁ ସେଇ ବେଶ୍ୟାଟିର ନାମ ସଂକୀର୍ତ୍ତନ କରିବୁ ।

ସନାତନ- ଇସ୍ - ପୃଥିବୀ ରସାତଳଗାମୀ ହେଲାଣି... କଲ୍କୀ ଅବତାର ନେଇ ନିଶ୍ଚେ ଭଗବାନ ଆସିବେ ଓ ତୁମପରି ପାପୀମାନଙ୍କୁ ସଂହାର କରିବେ ।

ରସଶେଖର - ମୁହଁରେ ହରିନାମ ନେଇ ଯିଏ ପତ୍ନୀକୁ ନର୍କକୁ ଠେଲିଦିଏ ସେ କ'ଣ ଧର୍ମାବତାର ସନାତନ ଗୋସେଇଁ ? ଜୀବନ ନେଇ ଏଠୁ ଯଥାଶୀଘ୍ର ପଳାୟନ କର - ନଚେତ୍...

ସନାତନ - ନଚେତ୍ ?

ରସଶେଖର - ଚଣ୍ଡବାହୁକୁ ଡକେଇ ଅର୍ଦ୍ଧଚନ୍ଦ୍ର ଦେଇ ତୁମକୁ ବିଦା କରିବାର ସୁବନ୍ଦୋବସ୍ତ କରାଯିବ ।

ସନାତନ - ଚାହିଁଲେ ଏଇ ମୁହୂର୍ତ୍ତରେ ତୁମକୁ ମୁଁ ଭସ୍ମୀଭୂତ କରିଦେଇପାରେ । ମୁଁ ନୈଷ୍ଠିକ ବ୍ରାହ୍ମଣ, ସ୍କନ୍ଧରେ ମୋର ଯଜ୍ଞୋପବୀତ ।

ରସଶେଖର - ଗରମ ପାଣିରେ ଘର ପୋଡ଼େନି ଗୋସେଇଁ... ଯିବ ନା ଦେଖିବ - ଚଣ୍ଡବାହୁ ! ... ଚଣ୍ଡବାହୁ... ! (ଡାକିଛି ଉଚ୍ଚକଣ୍ଠରେ)

ସନାତନ - (ବ୍ୟସ୍ତ ହୋଇ) ଥାଉ, ଥାଉ ତାକୁ ଆଉ ଡାକନା । ସେଦିନ ତାର ପ୍ରହାର ମୋ ମନେ ଅଛି । ମୋ ବର ପଣିଆକୁ ଏକଦମ୍ ଛଡ଼େଇ ଦେଲା ।

ରସଶେଖର - (ପାଖକୁ ଯାଇ ଠେଲିଦେଇ) ଯାଅ ହେ ପୁରୁଷ ପୁଙ୍ଗବ ।

ସେଦିନ ନିଜ ପତ୍ନୀର ମର୍ଯ୍ୟାଦା ରଖିତ ପାରିଲନି । ନାମାବଳୀ ପକେଇ ଚିତାମାରି ତୁଛାଟାରେ ହରିନାମ ଘୋଷୁଚ । ସେଦିନ ତୁମେ ମରିଯାଇଥିଲେ ମଙ୍ଗଳ ହୋଇଥାନ୍ତା ।

ସନାତନ - ଆହା ! ମୋ’ ମୃତ୍ୟୁ କାମନା କରନି- ମୁଁ ଯାଉଛି । ମୁଁ ସଦ୍ ବିପ୍ର... ହଁ... ଠିକ୍... ଠିକ୍... ଘୋର କଳିକାଳ ଆସିଗଲା - ଘୋର କଳିକାଳ । ଶୀଘ୍ର ଏଠାରୁ ପଳାୟନ କରିବା ଶ୍ରେୟସ୍କର ।

ରସଶେଖର - (ଠେଲି ଠେଲି ଛାଡ଼ିଦେଲା) ଯାଆମ... ବକ୍ ବକ୍ ଆଉ କରନା । ଏଇସବୁ କୁଳ ପାଂଶୁଳମାନଙ୍କ ପାଇଁ ନାରୀ ରୂପଜୀବୀ ହୁଏ - ଦେହ ବିକ୍ରୀ କରେ ।

(କିଛି ସମୟ ପରେ ସେ କୀର୍ତ୍ତନ କରିଛି – ଚିନ୍ତାମଣି... ଚିନ୍ତାମଣି... ବୋଲି । ଆସିଛନ୍ତି ବିଲ୍ୱ ମଙ୍ଗଳ ହାତରେ ମଦ୍ୟପାତ୍ର ।)

ବିଲ୍ୱମଙ୍ଗଳ – ସାବାସ୍... ସାବାସ୍... ରସଶେଖର ! ମୋ ଆଦେଶ ତୁମେ ଠିକ୍ ଭାବରେ ପାଳନ କରିଛ ।

ରସଶେଖର – ସାରା ରାଜ୍ୟ ଆଜି ଚିନ୍ତାମଣି ଗାନରେ ମୁଖରିତ କୁମାର ।

ବିଲ୍ୱମଙ୍ଗଳ - (ମାତାଲ ଅବସ୍ଥାରେ) ସନ୍ଧ୍ୟା ସମାଗତ ହେଲାଣି ନାଁ...

ରସଶେଖର - ସୂର୍ଯ୍ୟଦେବ ଏଇ ଝଟ୍‌କିନା ବୁଡିଗଲେ କୁମାର... ପକ୍ଷୀମାନେ ଘର ବାହୁଡ଼ା ହେଲେଣି ।

ବିଲ୍ୱମଙ୍ଗଳ - ତେବେ ମତେ ବି ଯିବାକୁ ହେବ ଶେଖର । ଚିନ୍ତାମଣିର ଆସରକୁ ଯଥାଶୀଘ୍ର ... କାଳବିଳମ୍ବ ନକରି... ।

ରସଶେଖର - ସବୁ ସଜାଡ଼ି ଦେଇଛି ଆଜ୍ଞା... ଆପଣଙ୍କ ପାଇଁ ମଲ୍ଲୀମାଳ, ସୁବାସିତ ଚନ୍ଦନ, ଅତର - ଆଉ ଚିନ୍ତାମଣିକୁ ଉପହାର ଦେବାପାଇଁ ଗଜମୋତିର ମାଳା, ହୀରାର ଅଙ୍ଗୁରୀୟ, ମଣିମାଣିକ୍ୟ ଖଚିତ ବାହୁଟି...

ବିଲ୍ୱମଙ୍ଗଳ- ରସଶେଖର । ଚାଲ... ଆକାଶରେ ଜହ୍ନର ରୋଷଣୀ । ଏ ନିଶ୍ଚୟ ମୋ ଚିନ୍ତାମଣିର ମୁଖଶ୍ରୀ ତୁଳନାରେ ତୁଚ୍ଛ... କାଳିମା ମଣ୍ଡିତ ... ହାଃ... ହାଃ... ହାଃ...

ରସଶେଖର - ଚାଲନ୍ତୁ ଆଜ୍ଞା... ହଁ ଧୀରେ ... ଧୀରେ...

(ମଦ୍ୟପ ବିଲ୍ୱମଙ୍ଗଳକୁ ନେଇ ପ୍ରସ୍ଥାନ କଲାବେଳେ ପ୍ରବେଶ କରିଛି ଚଣ୍ଡବାହୁ)

ଚଣ୍ଡବାହୁ - ମଣିମା, ଆପଣଙ୍କୁ ସ୍ମରଣ କରିଛନ୍ତି କୁମାର ।

ବିଲ୍ୱମଙ୍ଗଳ- ମଣିମା... ସ୍ମରଣ କରିଛନ୍ତି...

ଚଣ୍ଡବାହୁ - ରୋଗଶଯ୍ୟାରେ ପଡ଼ି ଖୁବ୍ କଷ୍ଟ ପାଉଛନ୍ତି... ମଝିରେ ମଝିରେ ବିଲ୍ୱମଙ୍ଗଳ ବିଲ୍ୱମଂଗଳ କହି ପ୍ରଳାପ କରୁଛନ୍ତି... ବଞ୍ଚିବାର ଆଶା ଖୁବ୍ କମ୍ କୁମାର ! ରାଜବୈଦ୍ୟମାନେ ନିରାଶ ହେଲେଣି ।

ରସଶେଖର - ତା' ହେଲେ କୁମାର... ପିତାଙ୍କ ନିକଟକୁ ଶୀଘ୍ର ଚାଲନ୍ତୁ ।

ବିଲ୍ୱମଙ୍ଗଳ - (ଦ୍ୱନ୍ଦ୍ୱଗ୍ରସ୍ତହୋଇ) ପିତାଙ୍କ ନିକଟକୁ... ନାଁ ରସଶେଖର... । ତୁମେ ଚାଲିଯା ଚଣ୍ଡବାହୁ ! ଅବିଳମ୍ବେ ଖବର ଦିଅ... ମୁଁ ସେଠିକି ଯାଇପାରିବିନି– ତା' ଛଡ଼ା ମୁଁ ଗଲେ ମୃତ୍ୟୁର ଦ୍ୱାର ଦେଶରୁ ସେତ ଆଉ ଲେଉଟି ଆସିପାରିବେନି...

ଚଣ୍ଡବାହୁ - କୁମାର !

ବିଲ୍ୱମଙ୍ଗଳ- ଯାଅ... ମୁଁ ଚିନ୍ତାମଣି ଛଡ଼ା ଆଉ କାହାକୁ ଜାଣେନା । ସେ ମୋର ଗତି... ମୁକ୍ତି... ପିତାମାତା, ସଂସାର ପରିଜନ– ମୋ' ପାଇଁ ତୁଚ୍ଛ... ହଁ ଯାଅ ଚଣ୍ଡବାବୁ... ଠିଆ ହେଲ କାହିଁକି ? କହିଛିତ, ମୁଁ ଯାଇପାରିବିନି ।

ଚଣ୍ଡବାହୁ - ତା ହେଲେ... ମୁଁ ଯାଉଛି କୁମାର... ଯାହା ଆପଣଙ୍କର ଇଚ୍ଛା । (ସେ ଚାଲିଯାଇଛି)

(ଦୃଷ୍ଟି ଚଣ୍ଡବାହୁ ଆଡୁ ଫେରେଇ ରସଶେଖର ପ୍ରତି ନିବଦ୍ଧ କରି)

ବିଲ୍ୱମଙ୍ଗଳ - ଅବିଳମ୍ବେ ଚାଲ ରସଶେଖର ଏ ସୁନ୍ଦର ସନ୍ଧ୍ୟାଟାକୁ ନଷ୍ଟ ହେବାକୁ ଦିଅନା- ବ୍ୟର୍ଥ କରିଦିଅନା... ଏ ସନ୍ଧ୍ୟା ଆଣିଛି ମୋ ରକ୍ତରେ କାମନାର ତରଙ୍ଗ... ଆବେଗର ଶୀତ୍କାର - ବୋଳି ଦେଇଚି ଅଜସ୍ର ପୁଷ୍ପରାଗ ମୋ ମନରେ । ଚାଲ ରସଶେଖର - ଚାଲ !

(ରସଶେଖର ଓ ବିଲ୍ୱମଙ୍ଗଳ ନିଷ୍କ୍ରାନ୍ତ ହୋଇଗଲେ । ଦ୍ୱିତୀୟ ଜୋନ୍ ଅନ୍ଧକାର ହେଲା । ବାଦ୍ୟ ଯନ୍ତ୍ରରେ ସମୟ ଅତିବାହିତ ହେବାର ସୂଚନା... ।ଏଠାରେ କୌଣସି ଲୋକପ୍ରିୟ ଯାତ୍ରା କନସର୍ଟକୁ ନିଆଯାଇ ପାରେ । ପ୍ରଥମ ଜୋନ୍‌କୁ ଆସିଛନ୍ତି ନଟନଟୀ ଗୀତ ଗାଇ ନାଚି ନାଚି )

ଆସି ହେଲା ବିଭାବରୀ ପ୍ରାଣମିତ
    ଆସି ହେଲା ବିଭାବରୀ
ସୂରୁଜ ଦେବତା ଅସ୍ତାଚଳ ଗଲେ
    କାମୀମାନେ ହେଲେ ଘାରି ।
ନୀଳ ଆକାଶରେ ଖେଳିଲା ଚନ୍ଦ୍ରମା
    ବଉଦ ସାଙ୍ଗରେ ହସି
କୁମୁଦିନୀ ପ୍ରାଣ ପୁଲକି ଉଠିଲା
    ପୀରତି ରସରେ ରସି ।
ମଧୁର ଅନିଳ ପୁଲକ ଆଣିଲା
    ବିଞ୍ଚିଲା ଫୁଲର ବାସ
ଦେବ ମନ୍ଦିରରେ ଶୁଭଇ ଆଳତି
    ଭକତିର ସୁଧା ରସ ।
ଏ କାଳେ ଆସିଲା ଗରଜି ବରଷା
    ବିଜୁଳି ସଂଗତେ ନେଇ

ଝଡ଼ ଓ ବତାସୀ ବହିଲା ପ୍ରଖର
କିଛି ଆଉ ଦିଶେ ନାହିଁ ।

(ନଟ ଓ ନଟୀ ଗୀତ ବୋଲି ବୋଲି ଚାଲିଯାଇଛନ୍ତି । ମଞ୍ଚର ଦ୍ୱିତୀୟ ଜୋନ୍‌ରେ କିଛି ସମୟ ପାଇଁ ଝଡ଼ ବର୍ଷାର ଶବ୍ଦ ଓ ବିଜୁଳିର ଚମକକୁ ଦେଖାଇ ଦିଆଯାଇପାରେ । ବାହାରୁ ବିଲ୍ୱମଙ୍ଗଳର ଡାକ ଶୁଣାଯାଇଛି । ସମ୍ପୂର୍ଣ୍ଣ ଆଲୋକ ଆସିଛି ଏବେ ମଂଚରେ ।)

ବିଲ୍ୱମଙ୍ଗଳ- ଚିନ୍ତାମଣି ! ଚିନ୍ତାମଣି ! (ବର୍ଷା ପବନରେ ଏ ଡାକ ଶୁଣାଯାଇଛି ଅସ୍ୱଷ୍ଟ ଭାବରେ) ଚି.....ନ୍ତା.....ମ...ଣି ।

ଚିନ୍ତାମଣି - (ଘର ଭିତରୁ ଆସିଛି ଠିଆ ହୋଇଯାଇଛି କିଛି ସମୟ) କିଏ ! ଏ ଝଡ଼ ବର୍ଷା ରାତିରେ .... କିଏ ଡାକୁଚ... କିଏ ?

ବିଲ୍ୱମଙ୍ଗଳ- ଚିନ୍ତାମଣି ! ଚିନ୍ତାମଣି ! (ଏ ଡାକ ଆହୁରି ପାଖେଇ ଆସିଛି । ଶୁଣାଯାଇଛି କବାଟ ବାଡ଼େଇବାର ଶବ୍ଦ)

ଚିନ୍ତାମଣି - (ଫିଟେଇ ଦେଇଛି କବାଟ, ହତବାକ୍ ହୋଇଯାଇଛି ବିଲ୍ୱମଙ୍ଗଳକୁ ଏପରି ତିନ୍ତିଥିବା ଓ ବିପର୍ଯ୍ୟସ୍ତ ଅବସ୍ଥାରେ ଦେଖି - ପଛେଇ ଆସିଛି ଦି' ଚାରି ପାହୁଣ୍ଡ) ତୁମେ... ? ତୁମେ... ଏ ଝଡ଼ ବର୍ଷାରେ ?

ବିଲ୍ୱମଙ୍ଗଳ- ହଁ ଚିନ୍ତାମଣି । ବାହାରେ ଭୀଷଣ ଝଡ଼ ବର୍ଷା, ନଈବି ଦୁଇକୂଳ ଖାଉଛି । ମୋ ଭିତରେ ବି ଝଡ଼, ମୋ ମନ ନଈରେ ବି ପ୍ଲାବନ । ସବୁ ବନ୍ଧନଗୁଡ଼ାକୁ ଅତିକ୍ରମ କରିଆସିଛି ଚିନ୍ତାମଣି । ପିତା ମୋର ମୃତ୍ୟୁ ଶଯ୍ୟାରେ, ତଥାପି ପିତାଙ୍କର ଶେଷ ଦର୍ଶନଠୁ ମୋ ପାଇଁ ବଡ଼ ହୋଇ ଠିଆ ହେଲ ତମେ ।

ଚିନ୍ତାମଣି - (ବ୍ୟଥିତ ହୋଇ) ଏ କ'ଣ କହୁଚ ? ପିତା ତୁମର ଅନ୍ତିମ ଶଯ୍ୟାରେ । ନଈ ଦୁଇକୂଳ ଖାଉଛି ! ଭୟଙ୍କର ଝଡ଼ବର୍ଷା ରାତିରେ ପଙ୍କ କାଦୁଅ ବୋଳି ହୋଇ ତୁମେ ଧାଇଁଆସିଛ ମୋ' ପରି ଗୋଟେ ରୂପଜୀବୀ ପାଖକୁ । କାହିଁକି... କାହିଁକି କୁମାର ? ତୁମ ନିକଟରେ ରୂପର ତୃଷ୍ଣା କ'ଣ ଏତେ ପ୍ରବଳ ?

ବିଲ୍ୱମଙ୍ଗଳ- ତୁମେ ମୋର ସବୁ ଚିନ୍ତାମଣି । ଜାଣିଚ ଗୋଟିଏ ଦିନ ତୁମ ଆସରକୁ ନ ଆସିଲେ ମତେ ଦୁନିଆ ବିଷମୟ ଲାଗେ । ଆଜିର ଏ ପ୍ରଳୟଙ୍କରୀ

ରାତି ମୋର ପ୍ରତିବନ୍ଧକ ହୋଇପାରିନି । ତୁମ ପାଖରେ ମୁଁ ବରଂ କୃତଜ୍ଞ କାରଣ ମୋ' ଆସିବା ପାଇଁ ତୁମେ ଆରପାରିରେ ଭେଳାଟିଏ ବନ୍ଦୋବସ୍ତ କରିଥିଲ । ତୁମ ପ୍ରାସାଦ ଉପରୁ ନଦୀ ଅତଡ଼ା ଯାଏ ଶକ୍ତ ଦଉଡ଼ିଟିଏ ବି କୌଶଳରେ ବାନ୍ଧି ଦେଇଥିଲ ।

ଚିନ୍ତାମଙ୍ଗଳ - (ବିସ୍ମିତ ହୋଇ) ଭେଳା... ଦଉଡ଼ି... କ'ଣ କହୁଛ ?

ବିଲ୍ୱମଙ୍ଗଳ - ମତେ କ'ଣ ପରିହାସ କରୁଚ ଚିନ୍ତାମଣି ?

ଚିନ୍ତାମଣି - ଆଶ୍ଚର୍ଯ୍ୟ ! (ବିଶ୍ୱାସ କର) ଏ ସବୁର ବନ୍ଦୋବସ୍ତ ମୁଁ କିଛି କରିନଥିଲି ।

ବିଲ୍ୱମଙ୍ଗଳ- କରିନଥିଲ ? ତା' ହେଲେ... କ'ଣ ମୁଁ ମିଛ କହୁଚି ଚିନ୍ତାମଣି ? ଆସୁନ ଦେଖିବ ତୁମ ପ୍ରାଚୀର କଡ଼ରେ ଭେଳାଟି ଆଉ ଦଉଡ଼ିଟିବି ସେମିତି ଥିବ, ଆସ...

(ସେ ଚିନ୍ତାମଣିକୁ ନେଇ ଚାଲିଯାଇଛନ୍ତି । ମଂଚରେ ପୂର୍ବପରି ଆଲୋକ ରହିଛି । କନସର୍ଟରେ ଏକ ପୁରୁଣା ଗୀତିନାଟ୍ୟ ବା ଯାତ୍ରାର ଆଳାପ । ସେ ଦୁହେଁ ଫେରିଛନ୍ତି କିଛି ସମୟ ପରେ ।)

ଚିନ୍ତାମଣି - (ବ୍ୟଥା ଓ ବେଦନାରେ ଭାଙ୍ଗିପଡ଼ି) ଏଇ... ଗୋଟେ ପୋକ ସାଲୁବାଲୁ ପଚାସଢ଼ା ଶବ, ଆଉ ଗୋଟେ ଅଜଗର ସାପକୁ ତୁମେ... ତା' ହେଲେ ଭେଳା ଓ ଦଉଡ଼ି ବୋଲି ମନେକରିଛ କୁମାର । ଇସ୍ – ତୁମେ କେତେ ତଳକୁ ଖସିଯାଇଛ !

ବିଲ୍ୱମଙ୍ଗଳ- ଚିନ୍ତାମଣି ।

ଚିନ୍ତାମଣି - ପ୍ରବୃତ୍ତିର ନିଆଁରେ ଜଳି ଜଳି ତୁମେ ଅଂଗାର ହୋଇଗଲଣି କୁମାର - ଏବେବି ସମୟ ଅଛି ନିଜକୁ ରକ୍ଷା କର ।

ବିଲ୍ୱମଙ୍ଗଳ- (ଆବେଗରେ ଚିନ୍ତାମଣିର ହାତ ଧରି) ତୁମେ ମୋର ଆଶ୍ରୟଦାତ୍ରୀ, ମୋର ଇହକାଳ, ପରକାଳ– ମୁଁ ଆଉ କାହାକୁ ଜାଣିନି–

ଚିନ୍ତାମଣି - (ଚିତ୍କାର କରି) ମିଛ... ମିଛ କୁମାର – ଦିନେ ନା ଦିନେ ମୋ ରୂପ ମଉଳି ଯିବ । ସମୟର ଡେଣା ମାଡ଼ରେ ମୁଁ କଦାକାର ହୋଇଯିବି – ତୁମେବି ବୃଦ୍ଧ ପାଲଟି ଯିବ– କ'ଣ ଏହାର ମୂଲ୍ୟ ସବୁ ?

ବିଲ୍ୱମଙ୍ଗଳ- ଚିନ୍ତାମଣି ! ରୂପ ସୌନ୍ଦର୍ଯ୍ୟକୁ ମୁଁ କିନ୍ତୁ ପୂଜା କରିଆସିଛି ।

ଚିନ୍ତାମଣି - ସବୁ ଅଳୀକ - ତୁଚ୍ଛ ।

ବିଲ୍ୱମଙ୍ଗଳ- ତୁମର ଚନ୍ଦ୍ରମୁଖ, ବଧୁଲୀ ଅଧର, ମୀନ ନୟନ, ଶୁଭ୍ର ଦନ୍ତପଂକ୍ତି ଏ ସବୁ ମୋ ପାଇଁ ମୁକ୍ତି – ତମ ଦେହ ମୋ ପାଇଁ ନିର୍ମାଲ୍ୟ ।

ଚିନ୍ତାମଣି - ଏ ନର୍କ - ନିର୍ମାଲ୍ୟ ନୁହେଁ କୁମାର - ଧିକ୍, ଶତ ଧିକ୍ ତୁମକୁ । ତୁମ ପରି ଗୋଟେ ପ୍ରବୃତ୍ତି ପ୍ରବଣ ନାୟକର ମୁହଁ ଚାହିଁବାକୁ ମୋର କୁଣ୍ଠାଆସୁଛି । ଦେହ, କାମନା ଏସବୁ ବଡ଼ ନୁହେଁ କୁମାର – ଏହାର ଊର୍ଦ୍ଧ୍ୱରେ ଆଉ ଗୋଟେ ଜଗତ ରହିଛି । ତାର ସଂଧାନ କର କୁମାର – ମତେ ଭୁଲିଯାଅ ।

ବିଲ୍ୱମଙ୍ଗଳ- (ବେଦନା ବିଜଡ଼ିତ କଣ୍ଠରେ) ଭୁଲିଯିବି – ଯାହାପାଇଁ ସବୁ ଛାଡ଼ିଥିଲି – କେମିତି ଭୁଲିଯିବି ଚିନ୍ତାମଣି ! (ଆଖିରେ ଅଶ୍ରୁ)

ଚିନ୍ତାମଣି - (କାନ୍ଦି) ହଁ କୁମାର, ଗୋଟାଏ ଅଭିଶପ୍ତ ନର୍କଗାମୀ କୀଟକୁ ଭୁଲି ତୁମେ ପରମ ପ୍ରିୟଙ୍କୁ ସଂଧାନ କର । ତାହାହିଁ ତୁମର ମୁକ୍ତିର ମାର୍ଗ– ଯାଆ... ମଧରାତ୍ରିର ଗୋଟେ ଦୁଃସ୍ୱପ୍ନ ପରି ମତେ ଭୁଲିଯା ...ଆଉ ଏକ ଚିନ୍ତାମଣି ପାଖରେ ନିଜକୁ ସମର୍ପଣ କରିଦିଅ ।

ବିଲ୍ୱମଙ୍ଗଳ- ଆଉ ଏକ ଚିନ୍ତାମଣି ?

ଚିନ୍ତାମଣି - ହଁ କୁମାର - ସେ ବ୍ରଜ ବିହାରୀ, ମୁରଲୀଧାରୀ - ଯାଅ... କୁମାର - ଆଜିଠାରୁ ରୂପଜୀବୀ ଚିନ୍ତାମଣିର ଦ୍ୱାର ତୁମ ପାଇଁ ରୁଦ୍ଧ । ଯେଉଁ ଦିନ ତୁମେ ସିଦ୍ଧିଲାଭ କରିବ ଏ କଠୋର ପରୀକ୍ଷାରେ ସେହିଦିନ - ମୁଁ ଅପେକ୍ଷା କରିଥିବି ତୁମକୁ ଅର୍ଘ୍ୟଥାଳି ନେଇ ବନ୍ଦାପନା କରିବାଲାଗି । ବିଦାୟ - ବିଦାୟ କୁମାର (ସେ ଆଖିରେ ଅଶ୍ରୁନେଇ ଅନ୍ତରାଳକୁ ଚାଲିଯାଇଛି)

ବିଲ୍ୱମଙ୍ଗଳ- ଚିନ୍ତାମଣି ! ... (କିଛି ସମୟ ନୀରବତାପରେ) ଚିନ୍ତାମଣି ଚାଲିଗଲା... ଆଉ ଏକ ଚିନ୍ତାମଣିର ସନ୍ଧାନପାଇଁ ସେ ମତେ କହିଗଲା... ମତେ ଯିବାକୁ ହେବ ଅନ୍ୱେଷଣ କରିବାକୁ ହବ । କିନ୍ତୁ କେଉଁଠି ? କେଉଁଠି ? (ସେ ବିବ୍ରତ ହୋଇ ଆଗେଇ ଗଲାବେଳେ, ଦ୍ୱିତୀୟ ଜୋନ୍ ଅନ୍ଧାର ହୋଇଛି । ପ୍ରଥମ ଜୋନ୍‌ରେ ଆଲୋକ ଆସିଛି । ଦେଖାଗଲା ଠିଆ ହୋଇଛନ୍ତି ସୂତ୍ରଧାର)

ସୂତ୍ରଧାର - (ବର୍ଣ୍ଣନା କରିବା ଭଂଗୀରେ)

ଚିନ୍ତାମଣିଠାରୁ ଭର୍ତ୍ସନା ଶୁଣି ବିଲ୍ୱମଙ୍ଗଳ ସେହି ଅନ୍ୱେଷଣରେ ହିଁ ଗଲେ । ଜୀବନର ସେଇ ପରମପ୍ରିୟଙ୍କ ଅନ୍ୱେଷଣ- ସତ୍ୟର ଅନ୍ୱେଷଣ । ତେବେ ମନରେ ତାଙ୍କର ଦ୍ୱନ୍ଦ୍ୱ, ବିରୋଧ... ଦେହ ଆଉ ଦେହାତୀତର, ରୂପ ଆଉ ରୂପାତୀତର, ପ୍ରବୃତ୍ତି ଆଉ ନିବୃତ୍ତିର । ବୃନ୍ଦାବନ ପଥରେ ଯାଉ ଯାଉ କୌଣସି ଦିନ ସରୋବର ତୀରରେ ବିଲ୍ୱମଙ୍ଗଳ ଏକ ସୁନ୍ଦରୀ ସାଧବ ବଧୂକୁ ଦେଖନ୍ତି । ମନରେ ତାଙ୍କର ଆସେ ବିକାର । ସେ ତାର ପଶ୍ଚାଦ୍‌ଗମନ କରି ପ୍ରବେଶ କରନ୍ତି ସାଧବର ଅନ୍ତଃପୁରରେ ।

(ସୂତ୍ରଧାର ନିଷ୍କ୍ରାନ୍ତ ହୋଇଯିବାର ଠିକ୍ ପରେ ପରେ – ପ୍ରବେଶ କଲେ ନଟନଟୀ । ସେମାନେ ଗାଇଛନ୍ତି ଦର୍ଶକମାନଙ୍କ ଉଦ୍ଦେଶ୍ୟରେ । ନଟ ଗୀତର ପ୍ରଥମପଦ ବୋଲିଲା ପରେ ନଟୀ ଦ୍ୱିତୀୟପଦ ପୂରଣ କରୁଥିବ)

ବିଲ୍ୱମଙ୍ଗଳ ଶୁଦ୍ଧଚିତ୍ତ
କିଞ୍ଚିତେ ହେଲା ବିଗଳିତ ।
ଜାଣି ମନର ଏ ପ୍ରକାର
ଜନ୍ମିଲା ବୋଲି ଯେ ବିକାର ।
ବିକାର ପ୍ରତିକାର ପାଇଁ ।
ସେ ବଧୂ ପଛେ ପଛେ ଯାଇ ।
ବଧୂ ପ୍ରବେଶ ଅନ୍ତଃପୁରେ
ସାଧୁ ବସିଲା ଅଗଣାରେ ।
ଏକାଳେ ସେଇ ନାରୀପତି
ଶୁଦ୍ଧ ଚରିତ ଶାନ୍ତମତି ।
ସାଧୁର ପାଶେ ଉପସ୍ଥିତ
ଦେଖି ହୋଇଲା ଆଚମ୍ବିତ ।
ବହୁତ ସ୍ତବ ସ୍ତୁତି କଲା
କି ଆଜ୍ଞା ହେଉଛି ବୋଇଲା ।

ସାଧୁ ବୋଇଲା ମୋର କଥା
ରଖିଲେ କର ଏ ବ୍ୟବସ୍ଥା ।
ତୋର ସୁନ୍ଦରୀ ଯୁବତୀକି
ଝଟତି ଆଣ ମୋ' କତିକି ।
ବଣିକ ଚରିତ୍ର ବିଚିତ୍ର
ଅତ୍ୟନ୍ତ ବଇଷ୍ଣବ ଭକ୍ତ ।
ବଇଷ୍ଣବର ପ୍ରୀତି ପାଇଁ
ସକଳ କରି ସେ ପାରଇ ।
ଅନ୍ତଃପୁରକୁ ଚାଲିଗଲା ।
ସ୍ତିରୀକୁ ବିଭୂଷଣ କଲା ।
ନିଜ ନାରୀକୁ ଆଣି ତୋଷେ
ସମର୍ପି ଦେଲା ସାଧୁ ପାଶେ ।

(ଗୀତ ଶେଷ ହେବା ସଙ୍ଗେ ସଙ୍ଗେ ଅନ୍ଧାର ହେଲା ପ୍ରଥମ ଜୋନ୍ । ଦ୍ୱିତୀୟ ଜୋନ୍ ଆଲୋକିତ ହେବାମାତ୍ରେ ଦେଖାଗଲା ସାଧବର ଘର । ସେଠାରେ ଉପବେଶନ କରିଛନ୍ତି ବିଲ୍ୱମଙ୍ଗଳ । ତାଙ୍କର ବେଶ ଭୂଷାରେ ବି ପରିବର୍ତ୍ତନ ହୋଇଛି । ସେ ପିନ୍ଧିଛନ୍ତି ଗେରୁଆ ବସ୍ତ୍ର । ଦେହ ନାମାବଳୀ ମଣ୍ଡିତ ଓ ଚିତା ଶୋଭିତ । ପ୍ରବେଶ କରିଛି ସାଧବ । ସାଙ୍ଗରେ ଆଣିଛି ତାର ପତ୍ନୀକୁ)

ସାଧବ - ମହାଶୟ ! ଏଇ ମୋର ପତ୍ନୀ ସୁଚେତା ! ମୋର ସତ୍ୟ ମୁଁ ପୂରଣ କରିଛି ।

ବିଲ୍ୱମଙ୍ଗଳ - ସତରେ ଆପଣ... (ସେ ଯେମିତି ଆଉ କ'ଣ କହିବା ପାଇଁ ଚାହୁଁଥିଲେ କିନ୍ତୁ ନିଜକୁ ଅପରାଧୀ ମନେକରି ପରେ ଅଟକି ଯାଇ)

ସାଧବ - ଦେବତା, ବୈଷ୍ଣବ ଏମାନଙ୍କ ପାଖରେ ସତ୍ୟ ହାରିବା ମହାପାପ ଆଜ୍ଞା । ଆପଣ ମୋ ପତ୍ନୀକୁ ଉପଭୋଗ କରିବା ପାଇଁ ଚାହୁଁଥିଲେ । ମୁଁ ସମର୍ପି ଦେଲି – ସତ୍ୟ ଛୁଡ଼ିବା ମୋ ଜାତକରେ ନାହିଁ । ନିଅନ୍ତୁ-ତା' ସହ ରାତ୍ରି ଯାପନ କରନ୍ତୁ ।

ବିଲ୍ୱମଙ୍ଗଳ - (ଯେମିତି ସେ ଖୁବ୍ କଷ୍ଟ ପାଇଛନ୍ତି) ଖୁବ୍ ଗୋଟେ ବଡ଼ ଅପରାଧ ମୁଁ କରି ଦେଇଛି ବଣିକ ନାଁ... ?

ସାଧବ - ସତ୍ୟ ପାଳନ ନ କଲେ ମୁଁ ବି ଅପରାଧୀ ହେବି ଗୋସେଇଁ ..... ସୁଚେତା ଏଇଠି ରହିଲା । ମୁଁ ଯାଉଛି । ଦେଖ୍ ସୁଚେତା ବୈଷ୍ଣବ ଗୋସେଇଁଙ୍କର କାମନା ପୂର୍ଣ୍ଣ କରିବୁ – ଇଏ ଆଜି ରାତିକ ପାଇଁ ତୋ ଇହକାଳ ପରକାଳର ଦେବତା । ତୋ ସ୍ୱାମୀର ଏଇଟା ଆଦେଶ ।

(ସେ ଚାଲିଯାଇଛି । କିଛି ସମୟ କଟିଛି ନୀରବରେ । ବିଲ୍ୱମଙ୍ଗଳ ଆସିଛନ୍ତି ସୁଚେତା ନିକଟକୁ)

ବିଲ୍ୱମଙ୍ଗଳ - (ସୁଚେତାର ନିକଟବର୍ତ୍ତୀ ହୋଇ) ଜାଣେ ମୁଁ ଅପରାଧୀ । (ବିବ୍ରତ କଣ୍ଠରେ) ମୁଁ... କ'ଣଯେ ମୁଁ କରିପାରିବି ? ବହୁଥର ଭାବିଛି ପ୍ରବୃତ୍ତିର କଳଙ୍କକୁ ମନରୁ ତଡ଼ିଦେବି- କିନ୍ତୁ ପାରିନି । ତୁମ ରୂପର ପସରା ମତେ ପୁଣି ଆକର୍ଷଣ କରିନେଲା । ମୁଁ.... (ଅସହାୟ କଣ୍ଠରେ) ମୁଁ ନିରୂପାୟ ।

ସୁଚେତା - ଆପଣ ବୈଷ୍ଣବ, ଗୃହତ୍ୟାଗୀ - ଏସବୁ ହୋଇ ଆପଣ କେମିତି ଏତେ ତଳକୁ ଗଲେ । ଏ ଘୋର ଅଧର୍ମ ଗୋସେଇଁ । ଆପଣ କିମିତିବି ସତ୍ୟ କରାଇନେଲେ ମୋ ସ୍ୱାମୀ ନିକଟରେ ମୋ ସହ ରାତ୍ରି ଯାପନ ପାଇଁ – ଜାଣନ୍ତି ଧର୍ମ ଏହା ଜମା ସହିବନି । ଆପଣ କ'ଣ ପାପର ଆଖି ନେଇ ଦୁନିଆକୁ ଏମିତି ଦେଖନ୍ତି ?

ବିଲ୍ୱମଙ୍ଗଳ- ସୁଚେତା ! ପାପର ଆଖି ! (ଏତକ କହି ସେ ଖୁବ୍ କଷ୍ଟ ଅନୁଭବ କରିଛନ୍ତି)

ସୁଚେତା - ଜାଣନ୍ତି ଯେଉଁ ଅଧର୍ମ ଆପଣ କରିବା ପାଇଁ ଯାଉଛନ୍ତି ଏ କାଳ ବକ୍ଷରେ କଳଙ୍କ ହୋଇ ରହିଯିବ । (ଅଶ୍ରୁପାତ କରି) ପୃଥିବୀ ରସାତଳଗାମୀ ହେବ । ସୂର୍ଯ୍ୟ ଚନ୍ଦ୍ର ଚିରକାଳ ପାଇଁ ନିର୍ବାପିତ ହୋଇ ଯିବେ ।

ବିଲ୍ୱମଙ୍ଗଳ- (ଚିତ୍କାର କରି) ବନ୍ଦ କର, ବନ୍ଦକର ସୁଚେତା... ଓଃ... ତୁମେ ... ତୁମେ ଠିକ୍ କହିଚ... ମୁଁ ଧର୍ମଦ୍ରୋହୀ ହେବିନି, ପୃଥିବୀକୁ ରସାତଳଗାମୀ

ହେବା ପାଇଁ ବି ଦେବିନି । ତୁମେ ବି ମୋ ସହ ରାତ୍ରିଯାପନ କରିବନି । ମୁଁ... ମୁଁ ଏଠୁ ଚାଲିଯିବି । ହଁ... ହଁ... ମୁଁ ଚାଲିଯିବି ।

ସୁଚେତା - ଗୋସେଇଁ !

ବିଲ୍ୱମଙ୍ଗଳ- ଗୋଟେ ଖାଲି ଅନୁରୋଧ ସୁଚେତା, ବୈଷ୍ଣବର ଭିକ୍ଷା... ତୁମର ସୁନ୍ଦର ଖୋସାରେ ମାରିଥିବା କଣ୍ଟା ଦୁଇଟା ମତେ ଦିଅ... ।

ସୁଚେତା - ମୁଣ୍ଡ କଣ୍ଟା... ସିଏ କ'ଣ ହେବ ଗୋସେଇଁ... ?

ବିଲ୍ୱମଙ୍ଗଳ- ସ୍ମୃତିର ପାଥେୟ ସୁଚେତା- ସାଙ୍ଗରେ ତାକୁ ନେଇଯିବି... ଯୋଉଠି ଥିଲେ ବି ସେହି କଣ୍ଟା ଦୁଇଟିକୁ ଦେଖି ମୁଁ ଭାବିବି ସାଧନାର ପଥ ବଡ଼ କଣ୍ଟକିତ- ବୈଷ୍ଣବର ସାଧନା ହେଉ – ସତୀ ନାରୀର ସାଧନା ହେଉ ଏ ସବୁ କଣ୍ଟକିତ । ବିଳମ୍ବ ନ କରି ଦିଅ ସୁଚେତା, ରାତ୍ରି ଅଧିକ ହେବାକୁ ଯାଉଛି । ଏଇ ଅନ୍ଧାର ରାତିରେ ମୁଁ ଚାଲିଯିବି ।

ସୁଚେତା - (କଣ୍ଟା ଦୁଇଟି ଖୋଷାରୁ କାଢ଼ିଦେଇଛି) ନିଅନ୍ତୁ ଗୋସେଇଁ... ଏଇ କଣ୍ଟା ଦୁଇଟି ।

ବିଲ୍ୱମଙ୍ଗଳ- (କଣ୍ଟା ଦୁଇଟି ଧରି) ସୁଚେତା ! ସତରେ ମଣିଷର ସବୁ ପାପ ଓ ପ୍ରଲୋଭନ ପାଇଁ ତାର ଆଖି ଦୁଇଟି ଦାୟୀ । ତାକୁ ନଷ୍ଟ ନ କଲେ ସେ ଦିବ୍ୟ ଚେତନାର ଆଲୋକ ଦେଖିପାରେନା– ଖାଲି ଘାଣ୍ଟି ହେଉଥାଏ (ଦୁଇ କଣ୍ଟାକୁ ଦୁଇ ଆଖିରେ ଫୁଟେଇ ଦେଇଛନ୍ତି । ରକ୍ତାପ୍ଳୁତ ହୋଇଛି ଚକ୍ଷୁ)

ସୁଚେତା - ଗୋସେଇଁ ! ଗୋସେଇଁ ! ଇଏ ଆପଣ କ'ଣ କଲେ ? (ହାତ ଧରି ନେଇଛି)

ବିଲ୍ୱମଙ୍ଗଳ- ଠିକ୍ କରିଛି ସୁଚେତା । ପାପର ଆଖି ଦି'ଟାକୁ ମୁଁ ସବୁଦିନ ପାଇଁ ନଷ୍ଟ କରିଦେଇଛି । ଏଣିକି ମୁଁ ଠିକ୍ ସତ୍ୟର ଅନ୍ୱେଷଣ କରପାରିବି । ମତେ... ମତେ... ଏଇ ଦ୍ୱାର ବନ୍ଧ ସେପଟେ ରାସ୍ତାରେ ନେଇ ଛାଡ଼ିଦିଅ ସୁଚେତା... ! ମୋ କୃତକର୍ମ ପାଇଁ ମତେ ଅଭିଶାପ ଦିଅ ।

ସୁଚେତା - ଓଃ... ଆପଣ କାହିଁକି ନିଜେ ଜାଣିଶୁଣି ଅନ୍ଧ ହେଲେ... କାହିଁକି ? ମୋର ଯଦି ଦୋଷ ଥାଏ ମତେ କ୍ଷମା କରନ୍ତୁ...

ବିଲ୍ୱମଙ୍ଗଳ- ନାଁ ସୁଚେତା... ତୁମେ ମତେ ଦିବ୍ୟ ଜ୍ଞାନ ଦେଇଛ । (ଅଣ୍ଡାଳି ଅଣ୍ଡାଳି ତାକୁ ଧରି) ଚାଲ... ଚାଲ୍ ସୁଚେତା... ମତେ ରାସ୍ତା କଡ଼ରେ ଛାଡ଼ିଦେଇ ଆସ... ବିଲ୍ୱ ମଙ୍ଗଳ ଆଜି ଅନ୍ଧ ନୁହେଁ ସେ ସତ୍ୟ ସନ୍ଧାନୀ... ତାର ଆଖି ଦି'ଟାକୁ ସେ ନିଜ ହାତରେ ଫୁଟେଇ ଦେଲେବି ସେ ଦିବ୍ୟ ଦୃଷ୍ଟି ପାଇଁ ଅପେକ୍ଷା କରିବ । ଚାଲ... ଚାଲ ସୁଚେତା ।

(ଏକ କରୁଣ ସଙ୍ଗୀତର ମୂର୍ଚ୍ଛନା ପ୍ଲାବିତ ହେଲା ଚତୁର୍ଦ୍ଦିଗରେ । ମଞ୍ଚରୁ ନିଷ୍କ୍ରାନ୍ତ ହୋଇଗଲେ ସୁଚେତା ଓ ବିଲ୍ୱମଙ୍ଗଳ । ପ୍ରଥମ ଜୋନ୍ ଆଲୋକିତ ହେଲା । ଦେଖାଗଲା ନାଚି ନାଚି ବିଭିନ୍ନ ମୁଦ୍ରାରେ ଶୁଭ ଓ ଅଶୁଭର ସଂକେତମାନ ବୁଣି ଆସିଛନ୍ତି ନିୟତି । ଆଲୋକର ବିଚ୍ଛୁରଣ ସହ ତାଙ୍କ ଉଦ୍ଦଣ୍ଡ ନୃତ୍ୟ ସାରି ସେ ଚାଲିଯାଇଛନ୍ତି । ଏବେ ଆସିଛନ୍ତି ନଟ ନଟୀ ଗୀତ ଗାଇ ପାଲା ସ୍ୱରରେ)

ନଟ - ଶୁଣୁଥିବ ସାଧୁଜନ ଦେଇ ମନ କର୍ଣ୍ଣ ହୋ
ଦେଇ ମନ କର୍ଣ୍ଣ...
ବିଲ୍ୱମଙ୍ଗନ ଚରିତ କର୍ଣ୍ଣ ରସାୟନ ହୋ
କର୍ଣ୍ଣ ରସାୟନ ।

ନଟୀ - ଏହିପରି କିଛିଦିନ ବିତିଗଲା ଜାଣ ହୋ
ବିତିଗଲା ଜାଣ ।
ଅନ୍ଧ ଆଖି ନେଇ ବୁଲେ କାନ୍ତାର କାନନ ହୋ
କାନ୍ତାର କାନନ ।
କାହିଁ ଜନପଦ କାହିଁ ସମୁଦ୍ର କୂଳ ହୋ
ସମୁଦ୍ରର କୂଳ ।
ହରି ହରି ବୋଲି ଡାକେ ହୋଇ ସେ ବିକଳ ହୋ
ହୋଇ ସେ ବିକଳ

ନଟ - ଭକତ ମନ ଜାଣି ପ୍ରଭୁ ଦଇତାରୀ ହୋ
ପ୍ରଭୁ ଦଇତାରୀ
ପରମ ପୁରୁଷ ସିଞ୍ଚି ଦେଲେ କୃପା ବାରି ହୋ
ଦେଲେ କୃପାବାରି ।

(ନଟ ନଟୀ ଅନ୍ଧାରରେ ବୁଡ଼ିଗଲେ । ଦ୍ୱିତୀୟ ଜୋନ୍‌ରେ ଆଲୋକ ଆସିଲା ବେଳକୁ ଦେଖାଗଲା ଠିଆ ହୋଇଛନ୍ତି ବିଲ୍ୱମଙ୍ଗଳ ।)

ବିଲ୍ୱମଙ୍ଗଳ - ସେହିଦିନୁ ଅନ୍ଧ ଚକ୍ଷୁ ନେଇ ଘୂରି ବୁଲିଛି ଚାରିଆଡ଼େ ଖୋଜିଛି ମୋର ପ୍ରିୟଙ୍କୁ... କାହାନ୍ତି ସେ ? ଥରେ ହେଲେ ମତେ ଦେଖାଦିଅ ଭାବଗ୍ରାହୀ... (ବଂଶୀର ମନ ମତାଣିଆ ସ୍ୱର ପୁଣି ଭାସିଆସିଛି) ମୋ ଦୁଃଖର କଳା ରାତିଟାକୁ ଘୁଞ୍ଚେଇ ଦିଅ ପ୍ରଭୁ ! (ସେ ଅଣ୍ଡାଳି ଅଣ୍ଡାଳି ଚାଲିଲାବେଳେ ପ୍ରବେଶ କରିଛନ୍ତି କୃଷ୍ଣ-ବଂଶୀ ବଜେଇ, ବଜେଇ ବାଳଗୋପାଳ ବେଶରେ) କିଏ... ? କିଏ ବଂଶୀ ବଜାଉଛି ବାରମ୍ବାର.... ? କିଏ ... କିଏ ?

ଗୋପାଳ - ମୁଁ ପରା ମଉସା ! ମୁଁ ବଂଶୀ ବଜାଉଛି ।

ବିଲ୍ୱମଙ୍ଗଳ - ତୁ ... କିଏ ତୁ ?

ଗୋପାଳ - ମୋ ନାଁ ଗୋପାଳ ମଉସା ! ଗାଈ ଚରାଏ, ପାଖ ଗାଁରେ ମୋର ଘର ।

ବିଲ୍ୱମଙ୍ଗଳ - ତୋର କିଏ ଅଛନ୍ତି ବାପା !

ଗୋପାଳ - ଘରେ ମୋ ବାପା ମାଆ । ମୁଁ ଗାଈ ଜଗୁଥାଏ... ବଂଶୀ ବଜାଉଥାଏ ।

ବିଲ୍ୱମଙ୍ଗଳ - ବୁଝିଲି, ବୁଝିଲି ବାପା, ସେଦିନ ତୁଇ ସେଇନା ମତେ ନଈପାରି କରି ଦେଇଥିଲୁ । ଶୋଷରେ ମୋ ତଣ୍ଟି ଶୁଖି ଅଠା ଅଠା ହେଲାବେଳେ ମୋ ପାଟିରେ ଦହି ମୁନ୍ଦାଏ ଦେଇଥିଲୁ ।

ଗୋପାଳ - ହଁ ମଉସା ! ତୁମେ ଠିକ୍ ଚିହ୍ନିଛ ମୁଁ ସେଇ ଗୋପାଳ ।

ବିଲ୍ୱମଙ୍ଗଳ - (ହସ୍ତ ପ୍ରସାରିତ କରି) ଆ - ମୋ ପାଖକୁ ଆ ବାପା ! ତୁ ନଥିଲେ ମୁଁ ସେଦିନ ନଈ ପାଣିରେ ବୁଡ଼ି ମରିଥାନ୍ତି... ଶୋଷରେ ମୋ ଛାତି ଫାଟି ଯାଇଥାନ୍ତା ଆ... ମୋ ପାଖକୁ ଆ...

ଗୋପାଳ - ଉହୁଁ... ମୁଁ କାହିଁକି ଯିବିମ ଦେଖେ ଯାଇ ସେଆଡ଼େ ଗାଈଗୁଡ଼ା କୁଆଡ଼େ ଗଲେଣି ।

ବିଲ୍ୱମଙ୍ଗଳ - ଆରେ ଚଗଲା ଟୋକା (ଅଣ୍ଡାଳି ଅଣ୍ଡାଳି) ଥରେ ଆ ମୋ' ପାଖକୁ ... ଆ ... କୁଆଡ଼େ ଗଲୁ ... ଆ ... (ଅଣ୍ଡାଳି ଅଣ୍ଡାଳି ଧରିଲାବେଳେ ଗୋପାଳ ଦୂରଛଡ଼ା ହୋଇଯାଇଛନ୍ତି)

ଗୋପାଳ - (ଦୁଷ୍ଟାମୀ କରି) ଦେଖି... ଦେଖି ମଉସା ! ଛୁଇଁଲ ମତେ ... ହଁ ... ଦେଖି ... ଦେଖି ... ମୁଁ ଏଇଠି... ହଁ ... (ଗୋପାଳ ଏବଂ ବିଲ୍ୱ ମଙ୍ଗଳର ଏମିତି ଲୁଚକାଳି ଖେଳ ଚାଲିଥିବାବେଳେ ଅନ୍ଧ ବିଲ୍ୱମଙ୍ଗଳ ଧରି ନେଇଛନ୍ତି ଗୋପାଳର ହାତ)

ବିଲ୍ୱମଙ୍ଗଳ - ଏଥର ମୁଁ ତତେ ଛାଡ଼ିବିନି ବାପା - ଆ - ମୋ କୋଳକୁ ।

ଗୋପାଳ - (ଛାଟିପିଟି ହୋଇ ପରେ ଖସିଯାଇ) ଥରେ ପରା କହିଲି ମୁଁ ଜମା ଯିବିନି ... ନାଁ... ।

ବିଲ୍ୱମଙ୍ଗଳ - ଗୋପାଳ ! ଆରେ ଗୋପାଳ ! ଦୁଷ୍ଟ ! (ବ୍ୟଥିତ କଣ୍ଠରେ) ହଁ କାହିଁକି ବା ଆସିବୁ ମୋ' ପାଖକୁ ? ମୋର କିଏ ଅଛି ? ଗୋଟେ ଅନ୍ଧର, ସବୁ ହରେଇଥିବା ମଣିଷର କିଏ ବା ଅଛି ? (କାନ୍ଦିଛନ୍ତି)

ଗୋପାଳ - ଛିଃ, ମଉସା ତୁମେ କାନ୍ଦୁଛ ।

ବିଲ୍ୱମଙ୍ଗଳ - ମୋ ଅଶ୍ରୁର ମୂଲ୍ୟ ବା କ'ଣ ଗୋପାଳ ? ମୁଁ ଅନ୍ଧ– ନିଃସ୍ୱ...

ଗୋପାଳ - ମୋ ପାଖରେ ତୁମେ ଅନ୍ଧ ନୁହେଁ... ଚାହିଁଲ ଦେଖି ମୋ ଆଡ଼କୁ ଚାହଁ । ଏଇ ଦେଖ ମୁଁ ତୁମ ପାଖରେ, ଚାହଁନା !

ବିଲ୍ୱମଙ୍ଗଳ - ଗୋପାଳ !

ଗୋପାଳ - ମଉସା । ଆଖି ଖୋଲି ଚାହଁ ମଉସା !

ବିଲ୍ୱମଙ୍ଗଳ - ଗୋପାଳ ! (ଆଖି ମଳି ଚାହିଁଲା ମାତ୍ରେ ସେ ଦେଖିଛନ୍ତି ତ୍ରିଭଙ୍ଗୀ ଠାଣିରେ ଠିଆ ହୋଇଥିବା ଗୋପାଳଙ୍କୁ... ଚମକି ପଡ଼ିଛନ୍ତି ବିଲ୍ୱ ମଙ୍ଗଳ ।) ପ୍ରଭୁ ! (ଆଖିରେ ଅଶ୍ରୁ ଓ ବାଷ୍ପ ଗଦ୍ ଗଦ୍ କଣ୍ଠରେ) ହେ ମହାପ୍ରଭୁ !.... ! ଜୀବନ ମୋର ଧନ୍ୟ ହୋଇଛି । ସାର୍ଥକ ହୋଇଛି... (ସେ ନତଜାନୁ ହୋଇ ପ୍ରଣିପାତ କରିଛନ୍ତି । ଭାସିଆସିଛି ଚତୁର୍ଦ୍ଦିଗକୁ ପ୍ରତିଧ୍ୱନିତ କରି ବଂଶୀର ସ୍ୱର । ବିଲ୍ୱମଙ୍ଗଳ ଉଠି ଠିଆ ହେଲା ବେଳକୁ ଗୋପାଳ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି ।) ପ୍ରଭୁ ! ଜୀବନ ପାତ୍ରକୁ ପରିପୂର୍ଣ୍ଣ କରି କୁଆଡ଼େ ଦୂରେଇଗଲ ପ୍ରଭୁ ! (ଅଭିଭୂତ ହୋଇ ପଡ଼ିଛନ୍ତି ବିଲ୍ୱମଙ୍ଗଳ । ହାତ ଯୋଡ଼ି ପ୍ରାର୍ଥନା କରିଛନ୍ତି । ଅନ୍ତରାଳରୁ କୌଣସି ଲୋକପ୍ରିୟ ଭଜନର ମୂର୍ଚ୍ଛନା ଭାସିଆସିଛି । ଆଲୋକ ଲିଭିଯାଇଛି ଦ୍ୱିତୀୟ ଜୋନ୍‌ରେ । ମଞ୍ଚରେ ଆଲୋକ ଆସିଲାବେଳକୁ

ଦେଖାଯାଇଛି ସୂତ୍ରଧାର ଠିଆ ହୋଇଛନ୍ତି ପ୍ରଥମ ଜୋନ୍‌ରେ । ମୁହଁରେ ସ୍ମିତହସ)

ସୂତ୍ରଧାର - ବିଲ୍ୱମଙ୍ଗଳ କେବଳ ଗୋଟିଏ ସମୟର ନୁହଁନ୍ତି ବନ୍ଧୁଗଣ ! ସେ ଚିରକାଳର ଅନ୍ଧ ଓ ମାୟାଗ୍ରସ୍ତ ମଣିଷମାନଙ୍କ ପାଇଁ ଆଣନ୍ତି ଆଲୋକର ବାର୍ତ୍ତା । ପ୍ରବୃତ୍ତି ଓ ନିବୃତ୍ତିର ଦ୍ୱନ୍ଦ୍ୱ ମଧ୍ୟରେ ସେ ଖୋଜନ୍ତି ପ୍ରତିଷ୍ଠା । ପାପ ଓ ଆତ୍ମ ଦହନ ଭିତରେ ସନ୍ତୁଳି ହେଉଥିବା ମଣିଷକୁ ସେ ଶିଖେଇ ଦିଅନ୍ତି ଆଧ୍ୟାତ୍ମିକତାର ଅନ୍ୱେଷଣ । ତେବେ ଆଉ ଟିକେ ଚିନ୍ତା କରନ୍ତୁନାଁ । ସେ ଅନ୍ୱେଷଣ କଣ ଶେଷ ହୁଏକି ବଂଧୁଗଣ ? (ସେ ମଞ୍ଚରୁ ନିଷ୍କ୍ରାନ୍ତ ହୋଇଗଲେ । ପ୍ରବେଶ କଲେ ନଟନଟୀ)

ନଟ ଓ ନଟୀ- ବୋଲ ହରି ବୋଲ ହରି

ହରି ହରି ବୋଲ ।

ହରି ବୋଲ, ହରି ବୋଲ, ବୋଲ ହରିବୋଲ

ବିଲ୍ୱମଙ୍ଗଳ ଚରିତ, ଭକ୍ତିରସ ଗୀତ

ରେ ମିତ ରେ ସଂଗାତ

ବୋଲ ହରି..... ହରିବୋଲ

ହରିନାମ ଏକା ସତ ଆଉ ସବୁ ମିଛ

ରେ ମିତ, ରେ ସଂଗାତ

ବୋଲ ହରି ..... ହରିବୋଲ

ଏକ ସ୍ୱରେ ଦିଅ ଆଜି ସର୍ବେ ହରିବୋଲ ।

(କୀର୍ତ୍ତନ ସ୍ୱରରେ ହରିବୋଲ ସହିତ ଖୋଳ କରତାଳର ଶବ୍ଦ କ୍ରମଶଃ ପରିବେଶକୁ ମୁଖରିତ କରି ରଖିଛି କିଛି ସମୟ ପର୍ଯ୍ୟନ୍ତ । ତାହା ଧୀରେ ଧୀରେ ଅପସାରିତ ହୋଇ ଆସିବାକ୍ଷଣି ମଞ୍ଚକୁ ପ୍ରବେଶ କଲେ ନିୟତି । କୀର୍ତ୍ତନସ୍ୱର ପରିବର୍ତ୍ତିତ ହେଲା ଦାମାମା ଧ୍ୱନିରେ । ଆଲୋକରଂ ବିଚ୍ଛୁରଣ ମଧ୍ୟରେ ନୃତ୍ୟ କରିଚାଲିଥିଲେ ନିୟତି । ମୁହଁରେ ତାଙ୍କର ପୂର୍ବର ମୁଖା । ବାଦ୍ୟର ତାଳେ ତାଳେ ଏହି ନୃତ୍ୟ ଥିଲା କେତେବେଳେ ଉଦ୍ଦଣ୍ଡତ କେତେବେଳେ ଲାଳିତ୍ୟପୂର୍ଣ୍ଣ । ନୃତ୍ୟ ଶେଷ ହୋଇଛି । ନିୟତି ଠିଆ

ହୋଇଛନ୍ତି ଏହା ପରେ ମଞ୍ଚର ମଧ ଭାଗରେ । ଦର୍ଶକମାନଙ୍କ ଆଡ଼କୁ ସାମାନ୍ୟ କିଛି ସମୟ ଚାହିଁ ସେ ହସି ଉଠିଛନ୍ତି ଅସ୍ୱାଭାବିକ ଭାବରେ ଓ ଜୋରରେ)

ନିୟତି – ହାଃ... ହାଃ... ହାଃ... ମଙ୍ଗଳ ପୁଣି ଅମଙ୍ଗଳ... ।

ଏସବୁ ମୋରି ନିର୍ଦ୍ଦେଶରେ । ମୁଁ ଏହାର ନିୟାମକ । ମୁଁ ନିୟତି । ମୁଁ ସମୟ, କାଳ, ଭାଗ୍ୟ... ସବୁ । ତା'ପରେ ମଙ୍ଗଳ କ'ଣ ଅମଙ୍ଗଳ ବା କଣ ? ମଙ୍ଗଳର ଢାଙ୍କୁଣି ତଳେ ଛପିଥାଏ ଅମଙ୍ଗଳର ହଳାହଳ, ପୁଣି ଅମଙ୍ଗଳର ରାହୁ କେତେବେଳେ ବି ମଂଗଳର ଶଂଖ ଧ୍ୱନି ତୋଳେ । ଦୋଛକିରେ ଠିଆ ହୁଏ ବିଚରା ମଣିଷ । (ଖୁବ୍ ଜୋରରେ ହସି) ମଙ୍ଗଳ ଆଉ ଅମଙ୍ଗଳର ଦୋ' ଛକିରେ ବିଚରା ମଣିଷ । ଖାଲି ବିଲ୍ୱମଙ୍ଗଳ କାହିଁକି ? ସମସ୍ତେ କଣ ନୁହନ୍ତି ? (ଏହା କହିବା ସହିତ ସେ ପୁଣି ବିଚିତ୍ର ଭଙ୍ଗୀରେ ନୃତ୍ୟ କରିବାକୁ ଲାଗିଲେ । ସଂଗୀତର ତାଳେ ତାଳେ ନୃତ୍ୟ କରୁଥିଲା ବେଳେ ସେ ଯେମିତି ବୁଣି ଚାଲିଥିଲେ ଶୁଭ ସଂକେତ ଓ ଅଶୁଭ ସଂକେତ ଗୁଡ଼ିକ ତାଙ୍କ ପଦପାତରେ ଓ ତାଙ୍କ ଚାହାଣୀରେ । ସେହି ଅନୁସାରେ ବିବିଧ ଆଲୋକର ବିଚ୍ଛୁରଣ ଚାଲିଥାଏ ମଞ୍ଚରେ । ନିର୍ବାପିତ ହୋଇଛି ଆଲୋକ ପ୍ରଥମ ଜୋନ୍‌ରୁ ।

ଦ୍ୱିତୀୟ ଜୋନ୍‌ରେ ଆଲୋକ ଆସିଲା ବେଳକୁ ଦେଖା ଦେଇଛିଯେ ସେଠାକୁ ଧୀର ପଦ ପାତରେ ଆସିଛନ୍ତି ବିଲ୍ୱମଙ୍ଗଳ । ବୈଷ୍ଣବର ବେଶ ଭୂଷାରେ ମଣ୍ଡିତ ସେ । ମଞ୍ଚର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସେ ଅଟକି ଯାଇଛନ୍ତି ଓ କହିଛନ୍ତି ନିଜକୁ ନିଜେ)

ବିଲ୍ୱମଙ୍ଗଳ- (ସମାହିତ କଣ୍ଠରେ) ଏତେ ଦିନେ ମୋର ମନସ୍କାମ ପୂର୍ଣ୍ଣ ହୋଇଛି । ହରି ଦର୍ଶନ ମୋ ପାପର କାଳିମାକୁ ଧୋଇ ଦେଇଛି । ଇଏ ଗୋଟେ ପୁନର୍ଜନ୍ମ... ରୂପାନ୍ତର । ପ୍ରବୃତ୍ତିର ପଙ୍କ ଓ ଆବର୍ଜ୍ଜନାରୁ ସ୍ୱର୍ଗୀୟ ସୁରଭିରେ ମଣ୍ଡିତ ଏକ ଇଲାକାକୁ... ଏ ଯାତ୍ରା । (ଉର୍ଦ୍ଧ୍ୱକୁ ହାତ ତୋଳି ଓ ପରେ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି) ସବୁ ତୁମରି କରୁଣା ପ୍ରଭୁ । (କିଛି ସମୟ ଚିନ୍ତାକରି) ତେବେ... କାହା ପାଇଁ ଏସବୁ ସମ୍ଭବ ହେଲା ? କାହାପାଇଁ ମୁଁ ସଂଧାନ ପାଇଲି ନୂତନ ପୃଥିବୀର । ତେବେ ବୃନ୍ଦାବନ ଯିବା ଆଗରୁ ତାକୁ ମୁଁ ନିଶ୍ଚୟ ଭେଟିବି ।

ମୋର କାହିଁକି ମନେ ହେଉଛି ସେ ନିଶ୍ଚୟ ମୋ ଅପେକ୍ଷାରେ ଥିବ । ଆମେ ଦୁହେଁ ବୃନ୍ଦାବନ ଯିବୁ... ସେଇଠି ରାଧାକୃଷ୍ଣଙ୍କ ପାଦପଦ୍ମ ଧ୍ୟାନ କରି ଜୀବନର ଅବଶିଷ୍ଟ ସମୟତକ କାଟିବୁ । ହଁ... ଚିନ୍ତାମଣି ମୋ ସହ ଯିବ... । (ଆବେଗ ପ୍ରବଣ ହୋଇ) ଚିନ୍ତାମଣି ! ଚିନ୍ତାମଣି ! ଚିନ୍ତାମଣି ! (ସେ ମଂଚରୁ ନିଷ୍କ୍ରାନ୍ତ ହେଲାବେଳେ ଆଲୋକ ନିର୍ବାପିତ ହୋଇଛି । ବାଦ୍ୟଯନ୍ତ୍ରରେ ସମୟ ବିତିବାର ସୂଚନା ଓ ପରେ କୌଣସି ଲୋକପ୍ରିୟ ଗୀତ କିମ୍ବା ପ୍ରାଚୀନ ବା ମଧ୍ୟଯୁଗୀୟ ଛାନ୍ଦର ଝଂକାର । ପୁଣିସେଇ ଜୋନରେ ଆଲୋକ ଆସିଲା ବେଳକୁ ଦେଖାଯାଇଛି ଏହା ରୂପାନ୍ତରିତ ହୋଇଛି ରୂପଜୀବୀ ଚିନ୍ତାମଣିର ଆସରରେ । ମଂଚର ମଧ୍ୟଭାଗରେ ବିଛାହୋଇଛି ଦାମିକା ଗାଲିଚା । ଗାଲିଚାର ବିଭିନ୍ନ ପାର୍ଶ୍ୱରେ ବସିଛନ୍ତି ତିନି ଚାରିଜଣ କାମୁକ ପୁରୁଷ । ହାତରେ ସେମାନଙ୍କର ପାନପାତ୍ର ଓ ନିଶାରେ ସେମାନେ ମସ୍‌ଗୁଲ । ନୃତ୍ୟକରୁଛନ୍ତି ଦୁଇଜଣ ଷୋଡ଼ଶୀ । ନୃତ୍ୟ ସହିତ ଦୁହେଁ ସୁରା ପରିବେଷଣ କରିଚାଲିଛନ୍ତି । ତାଙ୍କର ଅଂଗ ସାନିଧ୍ୟ ପାଇଁ ବ୍ୟାକୁଳତା ପ୍ରକାଶ ପାଇଛି ଗାଲିଚାରେ ଉପବେଶନ କରିଥିବା କାମାନ୍ଧ ପୁରୁଷମାନଙ୍କ ମଧ୍ୟରେ । ଜଣେ କାମୁକ ମଧ୍ୟ ପ୍ରଳାପ କରିଛି ମାତ୍ରାଧିକ ନିଶା ସେବନରେ)

ଚିନ୍ତାମଣି - (ମଂଚର ପ୍ରବେଶଦ୍ୱାର ନିକଟରେ ଏକ ଛୋଟ ଗାଲିଚା ଉପରେ ବସି ସେ ପାନ ଚୋବାଉଥିଲା ଓ ପିକଦାନୀକୁ ଛେପ ଥୁ, ଥୁ କରି ପକାଉଥିଲା । ଦୀର୍ଘ ଅନେକବର୍ଷ ବ୍ୟବଧାନ ମଧ୍ୟରେ ଚିନ୍ତାମଣିର ରୂପ ମଳିନ ପଡ଼ିଯାଇଛି । ତା ଆଖିତଳେ ବୟସର ଦାଗ । ଗାଢ଼କଳା ଉଜ୍ଜ୍ୱଳ ଚିକୁର ମଧ୍ୟ ହୋଇ ଆସିଛି ଧୂସର । ଦୂରରୁ ଭାସି ଆସିଛି- 'ଚିନ୍ତାମଣି', 'ଚିନ୍ତାମଣି' ଡାକ । ବିବ୍ରତ ଭାବରେ ଠିଆ ହୋଇ ପଡ଼ିଛି ଚିନ୍ତାମଣି । ଉଦ୍‌ଜୀବିତ ହୋଇଛି ତା ମନରେ ଅନେକଦିନ ତଳର ସ୍ମୃତି । ସେ ବିଚଳିତ ହୋଇପଡ଼ିଛି ଓ ବିଭିନ୍ନ ଦିଗକୁ ଚାହିଁଛି । ନାଚ ଗୀତର ଆସର ଚାଲିଛି ସେହିପରି । ଚିନ୍ତାମଣି ବ୍ୟାକୁଳ ହୋଇ ଉଚ୍ଚାରଣ କରିଛି ଅସ୍ପଷ୍ଟ ଭାବରେ) କିଏ ? ... କିଏ ?.... କିଏ ?.... କିଏ ଡାକୁଛି ମତେ ? କାହାର ଏ କଣ୍ଠସ୍ୱର ? ହଁ, ଏ ଡାକତ ମୋର

ଖୁବ୍ ପରିଚିତ... ଅତି ଆପଣାର ଏ ସ୍ୱର ? (ଡାକ କ୍ରମଶଃ ନିକଟତର ହୋଇ ଆସୁଥିଲା । ବିଲ୍ୱମଙ୍ଗଳର 'ଚିନ୍ତାମଣି'... 'ଚିନ୍ତାମଣି' ଡାକରେ ବ୍ୟସ୍ତ ଓ ବିବ୍ରତ ହୋଇ ଉଠୁଥିଲା ଚିନ୍ତାମଣି । ଏବେ ସେ ପୁଲକିତ ହୋଇଛି, ଯୁଗପତ୍ ଆନନ୍ଦ ଓ କାରୁଣ୍ୟ ଗ୍ରାସ କରିଛି ତା ମୁହଁକୁ । ସେ ସହସା ଉଚ୍ଚାରଣ କରିପକେଇଛି ।) ବିଲ୍ୱମଂଗଳ !... ତୁମେ ତାହେଲେ ଆସିଚ ବିଲ୍ୱମଂଗଳ । ଏତେ ଦିନ ପରେ... ଅନେକ ଦିନ ପରେ... (ଏଣିକି ଚିନ୍ତାମଣିର ଆବେଗ କଂପିତ ସ୍ୱର ଶୁଣାଯିବ ଚିତ୍କାର କଲାପରି) ଆରେ ବନ୍ଦ କର ଏ ନାଚ ଗୀତର ଆସର... ବନ୍ଦକର । ବିଲ୍ୱମଙ୍ଗଳ ଆସୁଛନ୍ତି ଏଇ ଶୁଣୁନ... ? । ତାଙ୍କ କଣ୍ଠରେ ଚିନ୍ତାମଣି... ଚିନ୍ତାମଣି ଡାକ । (ହଠାତ୍ ଥମିଯାଇଚି ନାଚ । ନୃତ୍ୟରତା କିଶୋରୀ ଦୁହେଁ ପ୍ରଶ୍ନ ସୂଚକ ଆଖିରେ ପରସ୍ପରକୁ ଚାହିଁଛନ୍ତି ଓ ଗୋପନରେ କିଛି କଥା ହୋଇଛନ୍ତି । ଯେପରିକି ସେମାନଙ୍କ ଭାବ ଭଂଗୀରୁ ସ୍ପଷ୍ଟ ହୋଇଯାଇଛି... କିଏ ସେ ବିଲ୍ୱମଂଗଳ ଯାହାଙ୍କ ପାଇଁ ଉତ୍କଣ୍ଠା ଚିନ୍ତାମଣିଙ୍କ ମନରେ ? ପୁଣି ଥରେ ଜୋର୍ କଣ୍ଠରେ ଆଦେଶ ଦେଲାପରି କହିଉଠିଛି ଚିନ୍ତାମଣି) ଆରେ ଯାଆ... ଶୀତଳ ଯାମିନୀ ନହେଲେ ଋତୁପର୍ଣ୍ଣା ଯେକେହି ପରିଚାରିକା ଭିତର ଘରେ ଥାଉନା କାହିଁକି, କହିଦିଅ ନେଇ ଆସୁ ମୋ ସେଦିନର ସେଇ ନଟୀର ବେଶଭୂଷା... ସଜେଇ ଦିଅ ମତେ... ଚିନ୍ତାମଣି ଆଜି ନାଚିବ ଆସରରେ... (ପାଗଳିନୀ ପ୍ରାୟ ହୋଇ ହସି) କିଶୋରୀ ସାଜିବ ଆଜି ଚିନ୍ତାମଣି... ଘୁଂଗୁରର ତାଳେ ତାଳେ... (ସତକୁ ସତ ସେ ନାଚିଛି ଆବେଗର ସୁଅରେ ଓ ତା ସହ ପ୍ରାଣଖୋଲା ହସିଛି ମଧ୍ୟ । ଏହା ମଧ୍ୟରେ ମଂଚକୁ ପ୍ରବେଶ କରିସାରିଥାନ୍ତି ବିଲ୍ୱମଂଗଳ ଓ ଅଟକିଯାଇ ଡାକିଛନ୍ତି ନୃତ୍ୟରତା ଚିନ୍ତାମଣିକୁ)

ବିଲ୍ୱମଂଗଳ - ଚିନ୍ତାମଣି ! (ଅଟକିଯାଇଛି ଚିନ୍ତାମଣି ଓ ନିର୍ନିମେଷ ନୟନରେ ଚାହିଁଛି ତାଙ୍କୁ) ହଁ... ମୁଁ ବିଲ୍ୱମଂଗଳ... ବିଲ୍ୱମଂଗଳ ପରା... ଅନେକ ଦିନ ପରେ ଆସିଛି ତମକୁ ଥରେ ଦେଖିଯିବା ପାଇଁ.. ତୁମ ପ୍ରାଣର, ମନର, ଦେହର ବିଲ୍ୱମଂଗଳ ।

ଚିନ୍ତାମଣି - (ଆଶ୍ଚର୍ଯ୍ୟ ଚକିତ ହୋଇ ଦେଖୁଥାଏ ତାଙ୍କୁ) ତୁ... ମେ ? ତୁ... ମେ... ? ତୁମେ ... କଣ ସେଇ ବିଲ୍ୱମଂଗଳ ? ତୁମ କଣ୍ଠସ୍ୱରରୁ

ମନେହେଉଥିଲା ତୁମେ ବିଲ୍ୱମଂଗଳ ନିଶ୍ଚୟ... ଏବେ ତମକୁ ଦେଖିଲାପରେ ମୋର ଧାରଣା ହେଉଛି... ତୁମେ ଆଉ କେହି । ହଁ, ହଁ, ତୁମେ ଆଉ କେହି ଅପରିଚିତ ।

ବିଲ୍ୱମଂଗଳ - ନା.... ମୁଁ ସେଇ ବିଲ୍ୱମଙ୍ଗଳ... ତୁମର ଏକାନ୍ତ ପ୍ରିୟ ବିଲ୍ୱମଂଗଳ । ତୁମେ ସେଦିନ ମତେ ଧିକ୍କାର କରିନଥିଲେ ମୁଁ ଦିବ୍ୟଦ୍ରଷ୍ଟା ହୋଇପାରିନଥାନ୍ତି... ତପସ୍ୱୀ... ସାଧକ କି ପରମ ବୈଷ୍ଣବରେ ପରିଚିତ ହୋଇ ପାରିନଥାନ୍ତି । ମୋର ରୂପାନ୍ତର ହୋଇଛି । ଲୋକେ ମତେ ମହାପ୍ରଭୁ ବିଲ୍ୱମଂଗଳ ବୋଲି ଡାକୁଛନ୍ତି । ମୋର ଅନେକ ଶିଷ୍ୟ । (ଆବେଗରେ) ସେଦିନର ସେଇ ପ୍ରବୃତ୍ତି ପ୍ରବଣ ଆଉ ହୀନ ଚରିତ୍ର ବିଲ୍ୱମଂଗଳ ଆଜି ଗୋଟେ ବିରାଟ ଅନୁଷ୍ଠାନ ପାଲଟିଯାଇଛି । ଏସବୁ ତୁମରି କୃପା ଚିନ୍ତାମଣି । ମୋ ଜୀବନର ଆରାଧ୍ୟଦେବୀ- ତମେ । ତମେ ମୋର ଧ୍ୟେୟ ଓ ଶ୍ରେୟ । (ସେ ଚିନ୍ତାମଣିକୁ ଆଭୂମି ପ୍ରଣତି ଜଣାଇବାକୁ ଯାଉଥିଲେ)

ଚିନ୍ତାମଣି - (ବିଲ୍ୱମଂଗଳଙ୍କ ଏ ଅବସ୍ଥା ଦେଖି ପଛକୁ କେଇପାଦ ହଟିଯାଇ) ଚୁପ୍‌କର । ଘୁଞ୍ଚିଯା ଏଠୁ... । ତମେ କିଏ ମୁଁ ଜାଣିନି, ମୁଁ ତମକୁ ଚିହ୍ନିନି ।

ବିଲ୍ୱମଂଗଳ - ଆରେ ଏକ'ଣ ? ବିଶ୍ୱାସ କର ମୁଁ ତୁମର ସେଇ ବିଲ୍ୱମଙ୍ଗଳ । ମୋର ରୂପାନ୍ତର ହୋଇଛି ।

ଚିନ୍ତାମଣି - (ବିଦ୍ରୂପକଣ୍ଠରେ) ହଁ ରୂପାନ୍ତର ନୁହେଁ ତ ଆଉ କ'ଣ ? ତୁମର ଏ ମୁଣ୍ଡିତ ମସ୍ତକ ଗୈରିକ ବସନ... ଏ ଚନ୍ଦନ ତିଳକ, ତୁଳସୀମାଳି... (ହସି) ଏଇ ରୂପାନ୍ତର ନାଁ... ।

ବିଲ୍ୱମଂଗଳ - ପ୍ରବୃତ୍ତିର ସାତତାଳ-ପଙ୍କରୁ ମୁଁ ବାହାରି ଆସିଛି ନିବୃତ୍ତିର ଜୟମାଲ୍ୟ ନେଇ । ତମେଇତ ମତେ ମାର୍ଗ ଦେଖାଇଚ ଚିନ୍ତାମଣି... । ସେଦିନର ସେ ଧିକ୍କାର... ।

ଚିନ୍ତାମଣି - ପୁଣି ତେବେ ଏଠିକି ଛୁଟି ଆସିଲ କାଇଁକି ? ବୟସର ଡେଣାମାଡ଼ରେ ମୁଁ ଅବଶ । ସମୟ ସବୁ ଚୋରି କରିନେଇଛି । ସବୁଠି ତାର ଛାପ । ଦେହରେ ମନରେ । ଦେଖୁନ, ମୋର ଶିଥିଳ ଚର୍ମ, ମଳିନ କାନ୍ତିକୁ ।

କେଶ ପାଶରେ ଧୂସର ମେଘର ସ୍ୱର୍ଶ । ଆଖିତଳେ ବିଷାଦର କାଳିମା, ଓଠବି ବିବର୍ଣ୍ଣ, ପାଣ୍ଡୁର । ତେବେ... କଣ ପାଇଁ ତମେ ଆସିଲଯେ । ତମେ ଯାଇଛ ତ ଯାଇଛ... ପୁଣି କାହିଁକି ?...

ବିଲ୍ୱମଂଗଳ - ତୁମେ ମୋର ଗୁରୁ, ନୂଆ ଆଲୋକର ସଂଧାନ ଦେଇଚ ତମେ ? ସେଇଥିପାଇଁ... ।

ଚିନ୍ତାମଣି - (କଣ୍ଠରେ ବିଦ୍ରୂପ) ଓ ସେଇଥିପାଇଁ ଗୁରୁ ବନ୍ଦନା କରିବାକୁ ଆସିଲ ନାଁ... ରୂପର ବନ୍ଦନା ପାଇଁ ନୁହେଁ.... ।

(ଏହା ମଧ୍ୟରେ ଜଣେ ପରିଚାରିକା ଦାମୀ ପେଟିକାଟିଏ ମଞ୍ଚରେ ରଖିଦେଇ ଯାଇଛି, ସେଥିରେ ସାଇତାହୋଇ ରହିଛି ନଟୀର ବେଶଭୂଷା । ସେଥିପ୍ରତି ଚିନ୍ତାମଣି ଦୃଷ୍ଟି ନଦେଇ କହିଛି) ବିଶ୍ୱାସକର ତୁମର କଣ୍ଠସ୍ୱର ଶୁଣି ମୁଁ ଯେଉଁ ବିଲ୍ୱମଙ୍ଗଳଙ୍କୁ ଦେଖିବି ବୋଲି ଭାବିଥିଲି ସିଏତ ତମେ ନୁହଁ । କୁହ ଏମିତି ବଦଳି ଗଲ କାହିଁକି ? କାହିଁକି ? କାହିଁକି ? (ଶେଷ ଆଡ଼କୁ ଚିନ୍ତାମଣିର କଣ୍ଠସ୍ୱର ଶୁଭୁଥିଲା ଆର୍ତ୍ତନାଦ ପରି ।) କାହାପାଇଁ ଆଉ ନାଚିବି ମୁଁ ଅତୀତକୁ ମନେପକେଇ । ସେଇମିତି ସାଇତା ହୋଇ ରହିଛି ସେଦିନର ବେଶଭୂଷା... (ଗୋଟି ଗୋଟି କାଢ଼ି ଗୋଡ଼ରେ ଫିଙ୍ଗିଦେଇଛି ଓ ଆଡ଼େଇ ଦେଇଛି ପେଟିକାକୁ) କୁହ ? ଏସବୁ କ'ଣ ଅର୍ଥହୀନ ?

ବିଲ୍ୱମଂଗଳ - କହିଚିତ, ରୂପାନ୍ତର । ଏହାକୁ ସ୍ୱୀକାର କରିବା ବ୍ୟତୀତ ଉପାୟ ନାହିଁ ।

ଚିନ୍ତାମଣି - ନାଁ, ଏ କେବଳ ଭେକର ରୂପାନ୍ତର ଚେତନାର ରୂପାନ୍ତର ନୁହେଁ ।

ବିଲ୍ୱମଂଗଳ - ଓଃ... କେମିତି ବୁଝେଇବି ତମକୁ । ବିଶ୍ୱାସ କର, ବିଶ୍ୱାସ କର ମତେ ?

ଚିନ୍ତାମଣି - କୁଆଡ଼େ ଗଲା ତମର ବହୁ ମୂଲ୍ୟ ଭୂଷଣ, ଅପରୂପ ଲାବଣ୍ୟ, ଅଂଗଭଂଗୀରେ ମିଳନର ପିପାସା । ଅଥଚ ତମେ ଠିଆ ହୋଇଚ ଦୀନହୀନ ବେଶରେ ।

ବିଲ୍ୱମଂଗଳ-ନା... ନା... ତା ନୁହେଁ ।

ଚିନ୍ତାମଣି - ତମର ମୁଣ୍ଡିତ ମସ୍ତକ, ଚନ୍ଦନ ଚିତା ଦେଖି ମୋର ଘୃଣା ଆସୁଛି । ତମେ କଣ ପଛକୁ ଫେରିଯାଇପାରିବନି । ହୋଇପାରିବନି ସେଇ ବିଲ୍ୱମଂଗଳ ? ଯାହା ଆଖିରେ ଥିଲା କାମନାର ନିଆଁ... ରୂପର ସାଗରରେ ଅବଗାହନ କରିବାର ବ୍ୟାକୁଳତା....

ବିଲ୍ୱମଂଗଳ - ଓଃ... ଭୁଲିଯାଅ ସବୁ, ଭୁଲିଯାଅ... ଅତୀତକୁ ମରିବାକୁ ଦିଅ । ମୁଁ ଅରୂପର ସଂଧାନୀ... କୃଷ୍ଣଭକ୍ତିରେ ଅବଗାହନ କରିଛି ମୁଁ, ତମେଇତ ତାର ମାଧ୍ୟମ ଥିଲ... ମନେ ନାହିଁ ରାତିର ଘନଘୋର ଅଂଧାର... ଶବ ପୃଷ୍ଠରେ ନଦୀ ପାର, ସର୍ପକୁ ରଜ୍ଜୁଭ୍ରମରେ ଅବଲମ୍ବନ କରି ତମରି ପ୍ରାସାଦରେ ପ୍ରବେଶ, ଆଉ ତମରି ଧିକକାର... ।

ଚିନ୍ତାମଣି - ମନେ ଅଛି... ମନେ ଅଛି ସବୁ । ତମରି ପାଗଳ ପଣକୁ ମୁଁ ଧିକ୍କାରି ଥିଲି... । ବିଶ୍ୱାସକର ମତେ... ତମେ ଗଲଯେ ଗଲ... ଦୀର୍ଘ ତିରିଶିବର୍ଷ... ଏହାଭିତରେ ମୋ ସଜଡ଼ା ଗଭାରେ ମଉଳିଛି କେତେ ଯେ ମଲ୍ଲୀ, ହେନା, ରଜନୀଗଂଧା । ଅର୍ଥହୀନ ହୋଇଛି ରାତିପରେ ରାତି, ମୋ ବାସକସଜ୍ଜାର ଆଭରଣ । ଲିଭିଯାଇଛି କାମନାର ପ୍ରଦୀପ । ବୃଥା ହୋଇଛି ଅଭିସାର ।

ବିଲ୍ୱମଂଗଳ - ତମେବି'ତ ଚିନ୍ତାମଣି କାଳର ନଖ ଆଉ ଦାନ୍ତରେ ବିବର୍ଣ୍ଣ ହୋଇଚ । ମହଳଣ ପଡ଼ିଛି ତମ ରୂପର ପସରା । ଚାଲ କାଳାତୀତ ହେବା, ହେବା ରୂପାତୀତ । ଦୁହେଁ ସାଥୀ ହୋଇ ବୃନ୍ଦାବନ ଯିବା । ଜୀବନର ଅବଶିଷ୍ଟ ସମୟତକ କୃଷ୍ଣଭକ୍ତିର ମହାସ୍ରୋତରେ ନିଜକୁ ହଜଇଦେଇ ମୁକ୍ତିପାଇବା । ଆସ... ଆସ ମୋ ସହ ଚିନ୍ତାମଣି । (ହାତଧରି ଅନୁରୋଧ କରୁଥିଲେ)

ଚିନ୍ତାମଣି - (ବିଲ୍ୱମଂଗଳଙ୍କର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଦୂରକୁ ଘୁଞ୍ଚିଆସି ଦୃଢ଼କଣ୍ଠରେ) ନା... ତମେ ଚାଲିଯାଅ ତମ ରାସ୍ତାରେ । ଆଉ ମୁଁ ତ ମୋ ରାସ୍ତା... । (ମ୍ଲାନ ହସି) ଆଉ କୋଉଠିକି ଫେରିବାର ସମ୍ଭାବନା ନାହିଁ । ମୁଁ ଗୋଟେ ମଲା ନଈ । ସମୁଦ୍ର କାହିଁ କେତେ ଦୂରରେ । ପୁଣି ମୁଁ ବି ଲେଉଟିଯାଇ ପାରିବନି ମୋର ଆଗ ଅବସ୍ଥାକୁ । ଏତିକି ମୁଁ ବୁଝିଛି କାଳର ମହାସ୍ରୋତ ଆଗରେ ସବୁ ତୁଚ୍ଛ... ବିଡ଼ମ୍ବନା...

ତମର କୃଷ୍ଣଭକ୍ତି... ତମର ରୂପାନ୍ତର... ଚିନ୍ତାମଣିର ରୂପ... ମଣିଷର କାମନା... ସବୁ... ସବୁ... । (ପୂର୍ବଠାରୁ ଆହୁରି ଦୃଢ଼କଣ୍ଠରେ) ଫେରିଯାଅ ବିଲ୍ୱମଂଗଳ । ତମରି ଆଦର୍ଶରେ ମତେ ଦୀକ୍ଷିତ କରିବାର ଅପଚେଷ୍ଟା କରନା ।

ବିଲ୍ୱମଂଗଳ - ଚିନ୍ତାମଣି ! ମୁଁ ଆସିଥିଲି ତମ ପାଇଁ ମଂଗଳର ବାର୍ତ୍ତାନେଇ... ଦିନେ ମୁଁ ଥିଲି ଅନ୍ୟମାନଙ୍କ ପାଇଁ ଅମଙ୍ଗଳର, ଅଶୁଭର ଗୋଟେ ରାହୁ, ଝନ୍‌ଜା... ଆଜି ମୁଁ ହୋଇଛି ମଂଗଳର ସମାହିତ ମନ୍ତ୍ର ଧ୍ୱନି । (ଆକୁଳ କଣ୍ଠରେ) ମତେ... ମତେ ଫେରାଇ ଦିଅନା ଚିନ୍ତାମଣି ।

ଚିନ୍ତାମଣି - (ଖୁବ୍ ଜୋରରେ ହସି) ମଂଗଳ... ଅମଂଗଳ... ଅମଗଂଳ ପୁଣି ମଙ୍ଗଳ, ଶୁଭ, ଅଶୁଭ... ଆସିବା ଫେରିବା, ଆରମ୍ଭ ପୁଣି ଶେଷ... ଏସବୁ ମଣିଷ ମନର କଳ୍ପନା । ସମୟ ଯେମିତି ନିଷ୍ଠୁର ସେମିତିବି ନିସ୍ତରଂଗ, ଆଉ କାଳ ବଡ଼ ଅବିଶ୍ୱାସୀ । ବାର୍ଦ୍ଧକ୍ୟର ପ୍ରଥମ ପାହାଚରେ ପାଦଦେଇ ମୋର ଏଇ ଅନୁଭବ ହୋଇଛି । ଅନ୍ୟମାନଙ୍କ ପରି କାଳହାତରେ ଆମେବି ଖେଳନା । (କିଛି ସମୟ ରହି) ତୁମେ ଯାଅ... (ପୂର୍ବଠାରୁ ଆହୁରି ଅଧିକ ଦୃଢ଼ ଓ ଉଚ୍ଚ କଣ୍ଠରେ)... ହଁ ଚାଲିଯାଅ... (ଏଣିକି ସେ ଚିତ୍କାର କରିଛି) ଚାଲିଯାଅ... ପ୍ରଳାପର ପ୍ରୟୋଜନ ନାହିଁ ।

ବିଲ୍ୱମଂଗଳ - (ବ୍ୟଥିତ ଓ ଆଶ୍ଚର୍ଯ୍ୟହୋଇ) ଚିନ୍ତାମଣି ! ମତେ... ମତେ ଥରେ ବୁଝିବାକୁ ଚେଷ୍ଟାକର । ଥରେ... ମାତ୍ର ଥରେ...

(ଆଖିରେ ଅଶ୍ରୁ ଓ ସେ ଉଦ୍‌ଗତ କୋହକୁ ଚାପିରଖିବାକୁ ଚେଷ୍ଟାକରୁଥିଲେ)

ଚିନ୍ତାମଣି- ହଁ... ଏବେ ଅର୍ଥପୂର୍ଣ୍ଣ ମୋ ନିକଟରେ ମରଣଯାଏ ଅବଶିଷ୍ଟ ଜୀବନ ଜୀଇଁବା । ବରଂ ଏଇ ଭଲ... ବଂଚିବାର ଯେଉଁ ପନ୍ଥା ମୁଁ ଅନେକ ବର୍ଷତଳୁ ଆଦରି ନେଇଛି । ଚାଲିଯାଅ... ଆଉ ଠିଆ ହୋଇ ରହିବାର କିଛି ମାନେ ହୁଏନା । ଅଶ୍ରୁ ଶୋଭାପାଏନା ସନ୍ନ୍ୟାସୀର ଚକ୍ଷୁରେ ।

ବିଲ୍ୱମଂଗଳ - ଠିକ୍ ଅଛି (ଦୀର୍ଘଶ୍ୱାସ ପକେଇ)... ମୁଁ ସେଦିନ ପରି ଆଜିବି ଫେରିଯାଉଛି ଚିନ୍ତାମଣି । ଜାଣେ ନାଁ.. ସେଦିନ ଅଧରାତିରେ ତମ

ନିକଟକୁ କାହିଁକି ଟାଣିହୋଇ ଆସିଥିଲି ? କାହିଁକି ବା ସତ୍ୟର ସଂଧାନ କଲି ତାପରେ... ? ସତ୍ୟ, ମୁକ୍ତିର ଦ୍ୱାର ଦେଶରେ ପହଂଚି ଭଗବତ୍ ଦର୍ଶନ କରି... ପୁଣି କାହିଁକି ବା ଆସିଲି ତୁମକୁ ଖୋଜି ଖୋଜି... (ଦୀର୍ଘଶ୍ୱାସ ପକେଇ) ସବୁ... ସବୁ ବୃଥା... ମଂଗଳ... ଅମଂଗଳ... ଘଟଣା... ଦୁର୍ଘଟଣା... ସତ୍ୟ... ଅସତ୍ୟ, ପାପ... ପୁଣ୍ୟ... ଏସବୁ ଗୋଟିଏ ବିନ୍ଦୁରେ... ହାଃ... ହାଃ... ହାଃ... ମଂଗଳ, ଅମଂଗଳ, ବିଲ୍ୱମଂଗଳ... ହାଃ... ହାଃ... (ସେ ପାଗଳଙ୍କ ପରି ହସି ଉଠିଲେ ପୁଣି କାନ୍ଦି ଉଠିଲେ ପିଲାଙ୍କ ପରି । କାନ୍ଦୁଥିଲା ମଧ ଚିନ୍ତାମଣି କଇଁ କଇଁ ହୋଇ । ଏହା ପରିବେଶକୁ କିଛି ସମୟ ଆଛନ୍ନ କରି ରଖିଛି । ଆଲୋକ ଧୀରେ ଧୀରେ ନିର୍ବାପିତ ହୋଇ ଆସୁଥିଲା ଦ୍ୱିତୀୟ ଜୋନ୍‌ରୁ । ବାଦ୍ୟଯନ୍ତ୍ରର ଧ୍ୱନି ସୂଚନା ଦେଉଥିଲା ନିୟତିଙ୍କର ଆଗମନ । ପ୍ରଥମ ଜୋନ୍ ଆଲୋକିତ ହେବାମାତ୍ରେ ସେ ପ୍ରବେଶ କରିଛନ୍ତି ଓ ଠିକ୍ ତାପରେ ସେ ନୃତ୍ୟ ସହ ବିଂଚି ଚାଲିଛନ୍ତି ଶୁଭ ଓ ଅଶୁଭର ସଂକେତମାନ ବିଭିନ୍ନ ମୁଦ୍ରାରେ । ନୃତ୍ୟ କ୍ଷିପ୍ରରୁ କ୍ଷିପ୍ରତର ହୋଇଛି । ହଠାତ୍ କ୍ରାସ୍ ମ୍ୟୁଜିକ୍ ସହ ଅଂଧାର ହୋଇଛି ମଂଚ ।)

(ଯବନିକା)

## ପୃଷ୍ଠବନ୍ଧ

# ନଟୀ ଚିନ୍ତାମଣିଠାରୁ ଭାବଚିନ୍ତାମଣିଙ୍କ ପର୍ଯ୍ୟନ୍ତ କ୍ରମ ଉତ୍ତରିତ ପଥରେ ସଂଜରୁ ସକାଳ

ପ୍ରଫେସର ସଂଘମିତ୍ରା ମିଶ୍ର

ବିଲ୍ୱମଙ୍ଗଳ ଏକ ବ୍ୟକ୍ତି ନୁହଁନ୍ତି, ଏକ ଉପଲବ୍ଧି, ଯିଏ ଆଧ୍ୟାତ୍ମିକ ଓ ମାନସିକ ସଙ୍କଟ ଭୋଗୁଥିବା ମଣିଷପାଇଁ ନବଜୀବନର ବାର୍ତ୍ତା ଦିଅନ୍ତି । ସେ ନିଜେ ପାଲଟି ଯାଆନ୍ତି ଏକ ଶେଷହୀନ ଅନ୍ୱେଷଣ । ସକଳ ମଙ୍ଗଳ ଓ ଅମଙ୍ଗଳର ଉର୍ଦ୍ଧ୍ୱରେ ସେ ପୀଡ଼ିତ ମାନବାତ୍ମାପାଇଁ ଆଣନ୍ତି ଆଲୋକର ଇଙ୍ଗିତ । ପୁରାଣର ପୃଷ୍ଠା ଭିତରୁ ଉଠି ଆସି ବିଲ୍ୱମଙ୍ଗଳ ପୁଣି ଥରେ ଦର୍ଶକ ଆଖି ସାମନାରେ ଠିଆ ହୁଅନ୍ତି ଆଉ ସଂଶୟଶୀଳ ମଣିଷ ଆଗରେ ଟୋକି ଧରିଛନ୍ତି ପ୍ରୀତି ଓ ମୁକ୍ତିର ଅଲିଖିତ ଚୁକ୍ତିନାମା । 'ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ' ପର୍ଯ୍ୟନ୍ତ ପହଞ୍ଚିବାପାଇଁ ନାଟ୍ୟକାର ବିଜୟ ଶତପଥୀଙ୍କୁ ଭେଟିବାକୁ ହୋଇଛି କେତେ ଅତୀତର ଫସିଲ୍, ଅଟକିବାକୁ ହୋଇଛି କେତେ ବିଷାଦବୃତ୍ତ ପାଖରେ । 'ନଷ୍ଟନୀଡ଼ର ଉପକଥା'ର ରୂପରେଖ ଆଙ୍କିବାବେଳେ 'କର୍ଣ୍ଣ'ର ଆତ୍ମହୀନତା ତାଙ୍କୁ ବେଶ୍ ଅନ୍ୟମନସ୍କ କରିଛି । 'କଂସର ଆତ୍ମା' ଯେ ବାରମ୍ବାର ଘଟ ବଦଳାଏ ତାହା ସେ ଦର୍ଶକମାନଙ୍କୁ କହିଛନ୍ତି ବେଶ୍ ପ୍ରଭାବଶାଳୀ ଢଙ୍ଗରେ । 'ଶୋଣିତ ସ୍ୱାକ୍ଷର'ଠାରୁ 'କାରାଗାରର କାହାଣୀ' ବାଟଦେଇ ନାଟ୍ୟକାର ଯେଉଁଠି ପହଞ୍ଚିଛନ୍ତି ସେଠି ଚାରିଛକ ଉପରେ ଶୁଭିଛି 'ପକାପଇସା ଦେଖ ତାମସା ।' ନାଟ୍ୟକାର ଏହି ସଞ୍ଚାର ପଥ ସଂପର୍କରେ କିଞ୍ଚିତ ଆଭାସ ଦେବା ଦରକାର ।

ବିଂଶ ଶତାବ୍ଦୀର ସତୁରୀ ଦଶକରୁ ନାଟକରଚନା ଆରମ୍ଭ କରି ଶ୍ରୀଯୁକ୍ତ ଶତପଥୀ ଆଜିପର୍ଯ୍ୟନ୍ତ ଲେଖିଛନ୍ତି ଅନେକ ନାଟକ । ସତୁରୀଦଶକ ଓଡ଼ିଆ ନାଟକର ମୋଡ଼ ପରିବର୍ତ୍ତନର ସମୟ । ୧୯୬୮ରେ 'ଶବବାହକମାନେ', ୧୯୬୯ରେ

'ଅରଣ୍ୟଫସଲ', ୧୯୭୦ରେ 'ମୃଗୟା', ୧୯୭୧ରେ 'ଅମୃତସ୍ୟପୁତ୍ରଃ', ୧୯୭୨ରେ 'ମହାନାଟକ' ଓ ୧୯୭୩ରେ 'କାଠଘୋଡ଼ା' ରଚିତ ହୋଇ ଏହି ବ୍ୟାପକ ପରିବର୍ତ୍ତନର ବାର୍ତ୍ତା ଦେଇଛି । ଏହି ସମୟରେ ଓଡ଼ିଆ ନାଟକ ଓଡ଼ିଶାର ଭୌଗୋଳିକ ସୀମାରେଖା ଡେଇଁ ଆନ୍ତର୍ଜାତିକ ନାଟ୍ୟଧାରା ସହିତ ସାମିଲ ହୋଇଛି । ଓଡ଼ିଶାର ଜନଜୀବନଠାରୁ ମଣିଷର ସାମଗ୍ରିକ ଜିଜୀବିଷା ହୋଇଛି ନାଟକର କଥାବସ୍ତୁ । ମଣିଷର ପାରିପାର୍ଶ୍ୱିକ ଅବସ୍ଥାଠାରୁ ଗୁରୁତ୍ୱପୂର୍ଣ୍ଣ ହୋଇଛି ତାର ମନସ୍ତାତ୍ତ୍ୱିକ ଚିନ୍ତାଧାରା । ଚେତନଠାରୁ ଅବଚେତନର ସ୍ୱରୂପ ଅଙ୍କନ ପାଇଁ ନାଟ୍ୟକାରମାନେ ପ୍ରୟାସ କରିଛନ୍ତି । ମଞ୍ଚାୟନ କୌଶଳରେ ମଧ ବ୍ୟାପକ ପରିବର୍ତ୍ତନ ଆସିଛି । ନାଟକର ସଙ୍ଗୀତ, ସଂଳାପ ଏପରିକି ଦୃଶ୍ୟସଜ୍ଜାରେ ମଧ ପରିବର୍ତ୍ତନ ଆସିଛି । ଚରିତ୍ରମାନେ ସ୍ୱୟଂପ୍ରକାଶ୍ୟ ହୋଇଛନ୍ତି । କେବେ କୌଣସି ବସ୍ତୁ ବା ପ୍ରାକୃତିକ ବିଭବ ଚରିତ୍ର ପାଲଟିଛନ୍ତି । କେବେ ପୁଣି ଚରିତ୍ରମାନେ ସଂଖ୍ୟାରେ ଚିହ୍ନିତ ହୋଇଛନ୍ତି ବା ନାଟକର ଅଗ୍ରଗତିରେ ଏକାଧିକ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ଏହି ସମୟରେ ନାଟ୍ୟକାର ଶ୍ରୀଯୁକ୍ତ ଶତପଥୀ ଓଡ଼ିଆ ନାଟକଜଗତରେ ପ୍ରବେଶ କରିଛନ୍ତି । ନାଟ୍ୟକାର ନିଜେ ଓଡ଼ିଆ ନାଟକର ଦିଶାପରିବର୍ତ୍ତନ ସହିତ ଭାରତୀୟ ତଥା ବିଶ୍ୱନାଟକର ଧାରା ସଂପର୍କରେ ଖବର ରଖନ୍ତି । ନାଟକର ସମାଲୋଚନା ଲେଖନ୍ତି । ନାଟକ ଓ ସାହିତ୍ୟପ୍ରତି ତାଙ୍କର ଦାୟବଦ୍ଧତାର ସଙ୍କେତ ନେଇ ସୁରେନ୍ଦ୍ର ମହାନ୍ତିଙ୍କ କାଳଜୟୀକୃତି 'ନୀଳଶୈଳ', ହରେକୃଷ୍ଣ ମହତାବଙ୍କ ଉଲ୍ଲେଖଯୋଗ୍ୟ ଉପନ୍ୟାସ 'ତୃତୀୟପର୍ବ' ଓ କାଳିନ୍ଦୀଚରଣଙ୍କର ପ୍ରଖ୍ୟାତ ଉପନ୍ୟାସ 'ଲୁହାର ମଣିଷ'ର ନାଟ୍ୟରୂପ ପ୍ରକାଶ ପାଇଛି । ଏପରିକି ସେ ସୁରେନ୍ଦ୍ର ମହାନ୍ତିଙ୍କର 'ବାସୀମଡ଼ା' ଓ ମହାପାତ୍ର ନୀଳମଣି ସାହୁଙ୍କର 'ବୃନ୍ଦାବନର ଶେଷ ଧୂପ' ଭଳି ଗଳ୍ପର ନାଟ୍ୟରୂପାନ୍ତର କରିଛନ୍ତି ।

ନାଟକରଚନା ସହିତ ନିର୍ଦ୍ଦେଶନା ଓ ଅଭିନୟ ମଧ ତାଙ୍କର ନାଟକପ୍ରତିଥିବା ଦାୟବଦ୍ଧତାର ସଙ୍କେତ ବହନ କରେ । ସେ 'ସୋସିଂଆଲ ଟ୍ରାଜେଡ଼ିର ତିନୋଟି ନାଟକ' ସଂକଳନରେ ନିଜର 'ଏଇ ଯେ ସୂର୍ଯ୍ୟ ଉଏଁ', 'ଶୋଣିତ ସ୍ୱାକ୍ଷର' ଓ 'ପ୍ରଳୟପରେ' ନାଟକ ତିନୋଟିକୁ ଏକତ୍ର କରିଛନ୍ତି । ଏହି ପୁସ୍ତକର ମୁଖବନ୍ଧ 'ଦି' ପଦ କଥା'ରେ ନାଟ୍ୟକାରଙ୍କ ବକ୍ତବ୍ୟ ହେଲା ଯେ ପୂର୍ବରୁ ଟ୍ରାଜେଡ଼ି ବା ଦୁଃଖାନ୍ତ ନାଟକରେ ନାୟକହିଁ ଭାଗ୍ୟବିପର୍ଯ୍ୟୟର ସମ୍ମୁଖୀନ ହେଉଥିଲା ଓ ତା'ପାଇଁ ଦର୍ଶକର କାରୁଣ୍ୟ ଶତଧାରାରେ ଝରିଯାଉଥିଲା । ମାତ୍ର ସେ ପର୍ସନାଲ ଟ୍ରାଜେଡ଼ିର ଦିନ ଆଜି ଶେଷ ହୋଇଛି । ନାଟ୍ୟକାରଙ୍କ ଭାଷାରେ ''× × ମାନବିକତାର ଅପମୃତ୍ୟୁ, ସୁସ୍ଥ ସମାଜ ଜୀବନକୁ

ଧ୍ୱଂସମୁଖୀ କରୁଥିବା ଦୁଷ୍ଟ ଶକ୍ତିମାନଙ୍କର କାରସାଦି, ବିଭୀଷିକାର ବାତାବରଣ ସୃଷ୍ଟି କରୁଥିବା ପୁଣି ନିଜକୁ ସମାଜର ବଡପଣ୍ଡା ବୋଲାଉଥିବା ମନ୍ୱନ୍ତରମାନଙ୍କ ଷଡ଼ଯନ୍ତ୍ର ଆଦି ନିମନ୍ତ୍ରଣ କରି ଆଣିଛି ଏହି ସୋସିଆଲ ଟ୍ରାଜେଡ଼ିକୁ । ଯେଉଁଠି ସମଗ୍ର ସମାଜ ବ୍ୟବସ୍ଥାଟି ବିପନ୍ନ ଓ ଯନ୍ତ୍ରଣାକାତର । ଉଚ୍ଚାଙ୍ଗ ମୂଲ୍ୟବୋଧମାନ ସେ ଅବସ୍ଥାରେ ଧରାଶାୟୀ ।'' (ସୋସିଆଲ ଟ୍ରାଜେଡ଼ିର ତିନୋଟିନାଟକ ପୃ-କ)

ଗୋଟିଏ ଦିଗରେ ନାଟ୍ୟକାରଙ୍କର ଅନୁଭବ ଯେ ସମକାଳୀନ ସମାଜଟି ବିପନ୍ନ ଓ ବହୁଭାବରେ ବିଭାଜିତ । ଅପରପକ୍ଷରେ ତାଙ୍କର ଉପଲବ୍ଧି ଯେ ପରମ୍ପରା, ଐତିହ୍ୟ ଓ ମୂଲ୍ୟବୋଧକୁ ବାଦ୍ ଦେଲେ ଆମ ମୂଳଦୁଆ ଦୁର୍ବଳ ହୋଇଯିବ । ତେଣୁ ସେ ଲୋକନାଟକ ଓ ଲୋକପ୍ରିୟ ନାଟକର ନାନା ଉପାଦାନ ନେଇ ନାଟକ ରଚନା କରିଛନ୍ତି । ଏହି ନାଟକଗୁଡ଼ିକ ମନୋରଞ୍ଜନ ସହିତ ମାନସମନ୍ଥନ କରିବାର କ୍ଷମତା ରଖନ୍ତି । କେଉଁଠି ଏହି ନାଟକଗୁଡ଼ିକ ସମାଜର ଶିକ୍ଷକ, ବନ୍ଧୁ, ସହଯୋଗୀ ଆଉ କେଉଁଠି ପ୍ରତିନିଧିରୁ ପ୍ରତୀକ ପାଲଟିଯାଉଥିବା ସର୍ବକାଳୀନ ଚେତନାର ବାହକ । ଏଠାରେ ମୁକ୍ତଧାରାର ନାଟକଟିଏ ଉତ୍ତର ଆଧୁନିକତାର ପ୍ରଥମ ପ୍ରତିଶ୍ରୁତି ପାଲଟିଯାଏ । ନାଟକ ଯେକୌଣସି ଉପାୟରେ ଦର୍ଶକନିକଟରେ ପହଞ୍ଚିବ, ଏଥିପାଇଁ ତାକୁ ସକଳ ପ୍ରଥା ଭାଙ୍ଗିବାକୁ ପଡ଼ିଲେ ପଛୁ ପଛକେ । କିନ୍ତୁ ଭାଙ୍ଗିପାରେ ସେଇ, ଯାହାର ନୂଆ କିଛି ଗଢ଼ିବାର କ୍ଷମତା ଥାଏ । ସେ ଇତିହାସକୁ ନୂଆକରି ଲେଖେ । କିମ୍ବଦନ୍ତୀ ସେଠାରେ କଡ଼ଲେଉଟାଏ । ଭାଷା ପାଲଟେ କାବ୍ୟିକ ଓ ଖଣ୍ଡ ଖଣ୍ଡ ଭାବନା ଗୁଛି ନୂଆ ଭାବରେ ଜୀବନର ଅନୁଭବକୁ ମାଳା କରିବାର ସାମର୍ଥ୍ୟ ସଂଗ୍ରହ କରନ୍ତି ଉତ୍ତର ଆଧୁନିକ କାଳର ସ୍ରଷ୍ଟାଗଣ ।

୧୯୭୪ରେ ନାଟ୍ୟକାରଙ୍କର ପ୍ରଥମ ନାଟକ 'ଫସିଲର ନିଦ୍ରାଭଙ୍ଗ' ରେଭେନ୍‌ସା କଲେଜର ଅଡ଼ିଟୋରିୟମ୍‌ରେ ମଞ୍ଚସ୍ଥ ହୋଇଥିଲା, ଯେତେବେଳେ ସେ ଥିଲେ ଏମ୍.ଏ. ଶ୍ରେଣୀର ଛାତ୍ର । ଏହାପରେ 'ଫସିଲ୍‌ର ନିଦ୍ରାଭଙ୍ଗ' ଓଡ଼ିଶାର ବିଭିନ୍ନ ସ୍ଥାନରେ ପରିବେଷିତ ହୋଇ ଦର୍ଶକୀୟ ସହୃଦୟତା ଲାଭ କରିବା ସହିତ ନାଟ୍ୟକାରଙ୍କୁ ଯଥେଷ୍ଟ ଆତ୍ମବିଶ୍ୱାସ ଦେଇଛି । ପୁରାତନ ସ୍ମୃତିର ଉଜ୍ଜୀବନ ଭିତରେ ଆତ୍ମକୃତ ତ୍ରୁଟିର ରୂପ ଏଥିରେ ପ୍ରଦର୍ଶିତ ହୋଇଛି, ଅବିଶ୍ୱାସ ଯେ ବିଶ୍ୱାସର ମୁଖାପିନ୍ଧି ନିସ୍ତରଙ୍ଗ ଜୀବନକୁ ବାତ୍ୟା ବିକ୍ଷୁବ୍ଧ କରିପାରେ, ଏହା 'ଫସିଲର ନିଦ୍ରଭଙ୍ଗ'ର ବକ୍ତବ୍ୟ । 'ବିବର୍ଣ୍ଣସହର'ରେ ସାଂସ୍କୃତିକ ସଙ୍କଟର ସ୍ୱରୂପ ଉଦ୍‌ଘାଟିତ ହୋଇଛି । ମାନବଜୀବନର ନୈରାଶ୍ୟ ଓ ସଙ୍କଟର ଚିତ୍ର ଦେଇ ନାଟ୍ୟକାର ନିଜର ଦାୟିତ୍ୱ ସାରି ନାହାନ୍ତି ବରଂ

ତହିଁରୁ ଉର୍ଦ୍ଧ୍ୱକୁ ଯିବାପାଇଁ ଆଲୋକିତ ପଥ ନିର୍ଦ୍ଦେଶ କରିଛନ୍ତି । 'କ୍ଷୁଧିତ ସରୀସୃପ'ରେ ଜୀବନର ବୃତ୍ତ ଓ ତହିଁରୁ ମୁକ୍ତି ଖୋଜୁଥିବା ମଣିଷର ଆକାଙ୍କ୍ଷା ହିଁ ରୂପ ପାଇଛି ।

୧୯୭୭ରେ ରଚିତ 'କଂସର ଆତ୍ମା'ରେ ମିଥ୍ ସହିତ ସମକାଳୀନ ଜୀବନକୁ ଏକାକାର କରିଦିଆଯାଇଛି । କଂସ ଅତ୍ୟାଚାରର ପ୍ରତୀକ, ଯାହାର ମୃତ୍ୟୁ ନାହିଁ । ସେ ଯୁଗ ପରେ ଯୁଗ ବେଶ୍ ବଦଳାଏ ସିନା ତାର ଆତ୍ମିକ ଭାବନା ବଦଳେ ନାହିଁ । ତାର କଂସପଣ ଅତୁଟ ରହେ । ୧୯୮୩ରେ ରଚିତ 'ଏଇ ଯେ ସୂର୍ଯ୍ୟ ଉଏଁ' ନାଟ୍ୟକାରଙ୍କୁ ଆଉ ଏକ ପରିବ୍ୟାପ୍ତ ସମ୍ମାନଜନକ ସ୍ଥିତିରେ ପହଞ୍ଚାଇଛି । ଏହି ନାଟକପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭକରି ସେ ଓଡ଼ିଶାର ଆଗ୍ରହୀ ଦର୍ଶକ/ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିଛନ୍ତି । 'ଏଇ ଯେ ସୂର୍ଯ୍ୟ ଉଏଁ'ର ନାୟକ ଶ୍ରୀ କଣ୍ଠ ବା କଣ୍ଠ ଦାସର କଣ୍ଠ ରୁଦ୍ଧ କରିବାପାଇଁ ଶାସକଦଳ ପ୍ରଚେଷ୍ଟା ଜାରିରଖିଛନ୍ତି । କଣ୍ଠ ଦାସ ପୋଲିସ ଗୁଳିର ଶିକାର ହେବାପରେ କହିଛି, "× × ଅନ୍ଧାର ରାତି ନିଶ୍ଚୟ ପାହିବ ଆଜ୍ଞା, ମୋ ଅନ୍ଧ ଚକ୍ଷୁରେ ମୁଁ ଠିକ୍ ଦେଖିପାରୁଛି, ପୂର୍ବାକାଶ ଲାଲ ହୋଇଗଲାଣି । ସୂର୍ଯ୍ୟୋଦୟ ଅଳ୍ପ ସମୟ ବାକି । ଏହାପରେ ରଚିତ ହୋଇଛି 'କର୍ଣ୍ଣ' । ଯେଉଁ ଚରିତ୍ର ସମଗ୍ର ଜୀବନ ଆତ୍ମହୀନମନ୍ୟତା ଭୋଗୁଥାଏ ମାତ୍ର ପାଲଟିଥାଏ ଅସଂଖ୍ୟ ନାମହୀନ ସ୍ୱାଭିମାନୀ ମଣିଷର ପ୍ରତିନିଧି । ଏଠାରେ ମଧ୍ୟ ମହାଭାରତର କର୍ଣ୍ଣ ପାଲଟିଛି ସୂର୍ଯ୍ୟପ୍ରକାଶ, ଯିଏ କେଶବ ଦାସଙ୍କ ଚକ୍ରାନ୍ତ ଓ ପାର୍ଥଙ୍କର ସନ୍ଦେହର ଘୂର୍ଣ୍ଣିବଳୟ ଭିତରେ ସତ୍ତା ହରାଇଛି । କିନ୍ତୁ ତା କଣ୍ଠରେ ଉଚ୍ଚାରିତ ହୋଇଛି ବଞ୍ଚିବାର ସଙ୍ଗୀତ । 'ଶୋଣିତ ସ୍ୱାକ୍ଷର'ରେ ପାରମ୍ପରିକ ନିଶା ମଙ୍ଗଳବାର ବା ଖୁଲଣା ସୁନ୍ଦରୀ କାହାଣୀର ରୂପାୟନ ହୋଇଛି । ଯଦି ନାୟକ ଶ୍ରୀଧର ଆଖି ଖୋଲିବ ତେବେ ସତ କହି କଷ୍ଟପାଉଥିବା ଧନେଶ୍ୱରମାନେ ଯନ୍ତ୍ରଣାମୁକ୍ତ ହେବେ । 'କାରାଗାରର କାହାଣୀ'ରେ କାରାଗାରକୁ କେନ୍ଦ୍ରକରି ତିନୋଟି ପୀଢ଼ି କଥା କୁହାଯାଇଛି । ଏହି କାରାଗାର ନିଜ କଣ୍ଠରେ କହେ ଦିନେ ପୁରାଣ ଓ ଇତିହାସର ଏକୁଡ଼ିଶାଳ ହୋଇଥିବା କାରାଗାର ଆଜି ନରପିଶାଚମାନଙ୍କର ଆଡ୍ଡାସ୍ଥଳ । 'ପ୍ରଳୟପରେ' ନାଟକରେ ପ୍ରକୃତିର ମହାପ୍ରଳୟଠାରୁ ବିକ୍ଷୁବ୍ଧ ଚିତ୍ତ ମନୁଷ୍ୟ ଚେତନାରେ ଘଟୁଥିବା ମହାବାତ୍ୟାର ଚିତ୍ର ପ୍ରଦତ୍ତ । ନାଟ୍ୟକାର ବିଜୟ କୁମାର ଶତପଥୀ ଓଡ଼ିଶାର ବିଭିନ୍ନ ନାଟ୍ୟଅନୁଷ୍ଠାନ ସହିତ ସଂପୃକ୍ତ । ସେ ଜଡ଼ିତ ହୋଇଥିବା 'ପ୍ରତୀକ', 'ଚେତନା', 'ରୂପକାର' ଓ 'ତ୍ରିନେତ୍ର' ଭଳି ନାଟ୍ୟଅନୁଷ୍ଠାନ ଓଡ଼ିଶାରେ ଗ୍ରୁପ୍ ଥିଏଟର ଆନ୍ଦୋଳନକୁ ଶକ୍ତିଶାଳୀ କରିବାପାଇଁ ଉଦ୍ୟମରତ । ତାଙ୍କର ଅନ୍ୟଏକ ନାଟକ 'ବିଷାଦବୃତ୍ତର କାହାଣୀ' ୧୯୮୦ରେ ସଙ୍ଗୀତ ନାଟକ ଏକାଡ଼େମୀ ତରଫରୁ ବ୍ରହ୍ମପୁରରେ ଅଭିନୀତ ହୋଇଥିଲା ।

'ମଙ୍ଗଳ ଅମଙ୍ଗଳ ବିଲ୍ୱମଙ୍ଗଳ' ୧୯୯୪ରେ ରେଭେନ୍‌ସା କଲେଜ ପରିସରରେ ମଞ୍ଚସ୍ଥ ହୋଇଥିଲା । ଏହି ନାଟକ ରଚନାର ପଶ୍ଚାତଭାଗରେ ଥିଲା 'ଦାର୍ଢ୍ୟତାଭକ୍ତି' ଓ କବି ବୈକୁଣ୍ଠନାଥଙ୍କର କବିତା । ଉଭୟକୃତିରେ ବିଲ୍ୱମଙ୍ଗଳ ଚରିତ୍ରର ବୈଚିତ୍ର୍ୟ ନାଟ୍ୟକାରଙ୍କୁ ବେଶ୍ ପ୍ରଭାବିତ କରିଥିଲା । ବଙ୍ଗୀୟ କବି ଲୀଳାଶୁକଙ୍କର କାବ୍ୟ 'ବିଲ୍ୱମଙ୍ଗଳ' ପାଠକରି ମଧ୍ୟ ସେ ଅଭିଭୂତ ହୋଇଥିଲେ । ବିଲ୍ୱମଙ୍ଗଳଙ୍କ ଚାରିତ୍ରିକ ଉତ୍ତରଣ ମଧ୍ୟରେ ସେ ମୁକ୍ତି ପ୍ରୟାସୀ ମାନବାତ୍ମାର ଉତ୍ତରଣ ଦେଖିପାରିଥିଲେ । ମଙ୍ଗଳ ଓ ଅମଙ୍ଗଳ ମଧ୍ୟରେ ସ୍ପଷ୍ଟ ସୀମାରେଖା ନ ଥାଏ ମାତ୍ର ଜଣେ ପ୍ରବୃତ୍ତିରୁ ନିବୃତ୍ତି ଆଡ଼କୁ ଯାଇପାରେ ନିଜର ପ୍ରଚଣ୍ଡ ଇଚ୍ଛାଶକ୍ତି ବଳରେ । ସେ ରୂପାନ୍ତରିତ ହୋଇଯାଏ ।

ଏହି ନାଟକ ମୁକ୍ତଧାରାର ଶୈଳୀରେ ରଚିତ ବୋଲି ନାଟ୍ୟକାର ପ୍ରଥମରୁ ସୂଚନା ଦେଇଛନ୍ତି । ଅର୍ଥାତ୍ ସକଳ ପ୍ରଥାବଦ୍ଧତାକୁ ଭାଙ୍ଗି ନାଟ୍ୟକାର ନିଜର ବକ୍ତବ୍ୟକୁ ଶାଣିତ ଓ ସ୍ପଷ୍ଟ ଭାବରେ ଉପସ୍ଥାପନ କରିଛନ୍ତି । ଏହି ନାଟକରେ ମିଥ୍‌ର ଗଢ଼ଣକୁ ମଧ୍ୟ ଭାଙ୍ଗି ଦିଆଯାଇଛି । ବିଲ୍ୱମଙ୍ଗଳ ଚିନ୍ତାମଣିଙ୍କ ପ୍ରେମରେ ଅନ୍ଧ ହୋଇ ନିଜ ପିତାଙ୍କ ମୃତ୍ୟୁକାଳୀନ ଇଚ୍ଛାକୁ ସଫଳ କରିପାରିନାହାନ୍ତି । ଭେଳା ଭାବି ଗଳିତ ଶବ ଓ ଦଉଡ଼ି ଭାବି ସର୍ପ ଉପରେ ଭରା ଦେଇ ଚିନ୍ତାମଣିର ରଙ୍ଗମହଲରେ ପହଞ୍ଚିଛନ୍ତି । ସେଠି ତାଙ୍କୁ ଅପେକ୍ଷା କରିଛି ଜୀବନର ଚରମ ସତ୍ୟ । ଚିନ୍ତାମଣି କଣ୍ଠରେ କୁହାଯାଇଛି "× × ତୁମ ପରି ଗୋଟେ ପ୍ରବୃତ୍ତିପ୍ରବଣ ନାୟକର ମୁହଁ ଚାହିଁବାକୁ ମୋର କୁଣ୍ଠା ଆସୁଛି । ଦେହ କାମନା ଏସବୁ ବଡ଼ ନୁହେଁ କୁମାର – ଏହାର ଊର୍ଦ୍ଧ୍ୱରେ ଆଉ ଗୋଟେ ଜଗତ ରହିଛି । ତାର ସନ୍ଧାନ କର କୁମାର, ମୋତେ ଭୁଲିଯାଅ –" । ଏଠାରେ ବିଲ୍ୱମଙ୍ଗଳ କେବଳ ଦାର୍ଢ୍ୟତାଭକ୍ତିର ପରିସରୁ ଓହ୍ଲାଇ ଆସିଥିବା ଚରିତ୍ରଟିଏ ନୁହଁନ୍ତି ବରଂ ସକଳ ମଙ୍ଗଳ ଓ ଅମଙ୍ଗଳକୁ ଆତ୍ମସ୍ଥ କରିଥିବା ମୁକ୍ତିପ୍ରୟାସୀ ମାନବାତ୍ମାର ପ୍ରତିନିଧି । ବିଷୟ ନିର୍ମାଣ କୌଶଳ ଦୃଷ୍ଟିରୁ ମଧ୍ୟ ଏହି ନାଟକ ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ । ସୂତ୍ରଧାର ସହିତ ନଟ ଓ ନଟୀ, ନିୟତି, ଗୋପାଳ ପ୍ରଭୃତି ଚରିତ୍ର ଏହାର ବିଷୟ ବିନ୍ୟାସ କରିଛନ୍ତି । ପ୍ରାରମ୍ଭରେ ବିଷୟ ପ୍ରବେଶ ସମୟରେ ନଟୀର ଉକ୍ତି –

ନୂଆ କିଛି ଆଜି କହରେ ନାଗର ନୂଆ କିଛି ଆଜି କହ
ଭକତି ରସର କଥା ପଦେ କହି, ମନ ମୋର ଆଜି ମୋହ

ନଟ ପରିହାସରେ କହିଛି – "ଏଁ, ଭକତି ରସ, ଭକତି ରସ ଆଡ଼କୁ ସିନା ବୁଢ଼ାବୁଢ଼ୀଙ୍କର ମନ ବଳେ । ତୋ ମନ କେବେଠୁ ହେଲାଣି ମ" । ସତେ ଯେପରି

ଭକ୍ତିରସ କଥା କହିବାକୁ ସେ ନଟୀର ସଂକେତ ପାଇଛି । ନଟର ଯୁକ୍ତି ହେଉଛି ଯେ ଏହା ସବୁ ଦର୍ଶକଙ୍କୁ ଭଲ ଲାଗିବ ନାହିଁ । ତା'ପରେ ସୂତ୍ରଧାରଙ୍କ ଉପସ୍ଥିତି ଆଉ ବିଷୟ ସଂପର୍କରେ ମତପ୍ରକାଶ ପରେ ଏହା ସ୍ପଷ୍ଟ ହୋଇଛି ଯେ ନାଟକ କେବଳ ଭକ୍ତିରସରେ ପର୍ଯ୍ୟବସିତ ନୁହେଁ ବରଂ ଏଥିରେ ଦଶର୍କମାନଙ୍କ ଚେତନାକୁ ପ୍ରସାରିତ କରିବାର କ୍ଷମତା ରହିଛି । ଏଠାରେ ନଟ ଓ ନିୟତି ଏକୀଭୂତ ହୋଇ ଦର୍ଶକଙ୍କୁ ନାଟକ ସହିତ ସଂଯୁକ୍ତ କରିଛନ୍ତି । ପୁଣି ପ୍ରବୃତ୍ତିପ୍ରବଣ ବିଲ୍ୱମଙ୍ଗଳ ସାଧବପତ୍ନୀର ରୂପରେ ଆକୃଷ୍ଟ ହୋଇ ତାର ସଙ୍ଗ ଇଚ୍ଛା କରିବାରୁ ସାଧବ ତାର ପତ୍ନୀକୁ ବିଲ୍ୱମଙ୍ଗଳର ମନସ୍କାମନା ପୂର୍ତ୍ତିପାଇଁ ପଠାଇ ଦେଇଛି । ତେଣୁ ଅପରାଧବୋଧରେ ଭାଙ୍ଗିପଡୁଥିବା ବିଲ୍ୱମଙ୍ଗଳ ସାଧବପତ୍ନୀ ସୁଚେତାର ମୁଣ୍ଡକଣ୍ଟା ଦୁଇଟି ମାଗି ନିଜର ଆଖି ଫୁଟାଇ ଦେଇଛନ୍ତି । ଏତିକିବେଳେ ଗୋପାଳ ନାମକ କିଶୋର ଚରିତ୍ରର ଉପସ୍ଥିତି ନାଟକକୁ ବେଶ୍ ଉପଭୋଗ୍ୟ କରିଛି । ସେ ଅନ୍ଧ ବିଲ୍ୱମଙ୍ଗଳଙ୍କୁ ମୁରଲୀଧାରୀ କୃଷ୍ଣରୂପରେ ଦର୍ଶନ ଦେଇଛନ୍ତି ।

ନାଟକର ପ୍ରାରମ୍ଭରେ ବିଲ୍ୱମଙ୍ଗଳଙ୍କର ସହକାରୀମାନେ ନବବିବାହିତା ଚିନ୍ତାମଣିକୁ ବଳପୂର୍ବକ ବିଲ୍ୱମଙ୍ଗଳଙ୍କ ପ୍ରମୋଦକକ୍ଷକୁ ନେଇ ଆସିଛନ୍ତି । ବିଲ୍ୱମଙ୍ଗଳ ଚିନ୍ତାମଣିକୁ ପ୍ରଥମେ ଦେଖିଲା ପରେ ଅଭିଭୂତ ହୋଇଛନ୍ତି ମାତ୍ର ପରେ ସେ ଚିନ୍ତାମଣିକୁ ନେଇ ତାଙ୍କ ସ୍ୱାମୀ ସନାତନଙ୍କ ପାଖକୁ ଯାଆନ୍ତି । ବିଲ୍ୱମଙ୍ଗଳଙ୍କ ନିବେଦନ ଓ ଚିନ୍ତାମଣିର କାରୁଣ୍ୟ ସନାତନଙ୍କ ହୃଦୟକୁ ତରଳାଇପାରେ ନାହିଁ । ଅପମାନିତା ଚିନ୍ତାମଣି ଉଭୟ ପୁରୁଷଙ୍କୁ ନିଜର ଦୁର୍ଭାଗ୍ୟପାଇଁ ଦାୟୀ କରେ ଓ ଏକାକୀ ଆରମ୍ଭ କରେ ନଟୀର ଜୀବନ ଯାହା ପାଲଟିଯାଏ ବିଲ୍ୱମଙ୍ଗଳଙ୍କ ପାଇଁ ପରମ ତୀର୍ଥସ୍ଥଳ । ଶେଷରେ ସେହି ତୀର୍ଥସ୍ଥଳରୁ ତାଙ୍କୁ ମିଳିଛି ପୁନର୍ବାର ଜୀବନପାଇଁ ନୂତନ ମାର୍ଗଦର୍ଶନ । ସେ ମାର୍ଗ ପ୍ରବୃତ୍ତିରୁ ନିବୃତ୍ତି ଆଡ଼କୁ, ପ୍ରେୟରୁ ଶ୍ରେୟ ଆଡ଼କୁ ଆଉ ପୃଥିବୀରୁ ଆକାଶ ଆଡ଼କୁ ପ୍ରସାରିତ ।

ଏ ନାଟକରେ ରସଶେଖର ଓ ଚଣ୍ଡବାହୁ ଚରିତ୍ରଦ୍ୱୟ ବେଶ୍ ଆକର୍ଷଣୀୟ । ରସଶେଖର ଚିନ୍ତାମଣିର ସ୍ୱାମୀ ସନାତନକୁ ଶୁଣାଏ ଯେ ତା'ପରି ପୁରୁଷମାନଙ୍କପାଇଁ ନାରୀ ରୂପଜୀବୀ ହୁଏ । ପୁଣି ସେ ଚିନ୍ତାମଣି ନାମରେ ଭଜନଗାଏ ।

''ଚିନ୍ତାମଣି ଚିନ୍ତାମଣି ଭଜ ଚିନ୍ତାମଣି
ଚିନ୍ତାମଣି ସତେ ଅବା ରୂପର ରୋଷଣି'' –

ସତେଯେପରି ରସଶେଖର ବିଲ୍ୱମଙ୍ଗଳଙ୍କର କାମନାପ୍ରବଣ ମାନସିକତାକୁ ଉଚ୍ଚାଟ କରିବାପାଇଁ ଅଭିପ୍ରେତ । ସେ ବିଲ୍ୱମଙ୍ଗଳଙ୍କପାଇଁ ମଲ୍ଲୀମାଳ, ସୁବାସିତ

ଚଳନ ଓ ଅତର ସଜାଡ଼ି ରଖେ । ଚଣ୍ଡବାହୁ ଆଦେଶ ମିଳିବା ପୂର୍ବରୁ ଖୋଜିଆଣେ ସୁନ୍ଦରୀ ତରୁଣୀମାନଙ୍କୁ ବିଲ୍ୱମଙ୍ଗଳଙ୍କ ସନ୍ତୋଷ ନିମିତ୍ତ । କିନ୍ତୁ ଏହି ଆଗ୍ରହ ତାକୁ ନବବିବାହିତା ଚିନ୍ତାମଣିକୁ ଆଣିବାରେ ସାହାଯ୍ୟ କରେ, ଯାହା କେବଳ ଚିନ୍ତାମଣି ନୁହେଁ ବରଂ ବିଲ୍ୱମଙ୍ଗଳଙ୍କର ଜୀବନର ପଟ୍ଟପରିବର୍ତ୍ତନରେ ସହାୟକ ହୁଏ ।

ନାଟ୍ୟକାର 'ମଙ୍ଗଳ ଅମଙ୍ଗଳ ଓ ବିଲ୍ୱମଙ୍ଗଳ'ରେ ଉପେନ୍ଦ୍ରଭଞ୍ଜଙ୍କର 'ପ୍ରେମସୁଧାନିଧି' ଓ ବିପ୍ରରାମ ଦାସଙ୍କର 'ଦାର୍ଢ୍ୟତାଭକ୍ତି'ରୁ କିଛି କିଛି ଅଂଶ ଆବଶ୍ୟକତା ଅନୁଯାୟୀ ଉଦ୍ଧାର କରିଛନ୍ତି । ପରିବେଶ ଅନୁସାରୀ ଏକାଧିକ ସଙ୍ଗୀତ ସେ ନିଜେ ମଧ୍ୟ ରଚନା କରିଛନ୍ତି । ପଟରସଉରା ନୃତ୍ୟର ଆଙ୍ଗିକରେ ନଟନଟୀ ଆସି ପ୍ରଥମେ ପ୍ରଦର୍ଶିତ ହେବାକୁ ଥିବା ନାଟକ ସଂପର୍କରେ ଦର୍ଶକମାନଙ୍କ ସହିତ ଆଳାପ କରିଛନ୍ତି । ଲୋକପ୍ରିୟ ଗୀତିନାଟ୍ୟ ବା ଅପେରାର ବାଦ୍ୟକୁ ସେଠାରେ ଗ୍ରହଣ କରାଯାଇଛି । ସେହିଭଳି ସମୟ ପରିବର୍ତ୍ତନର ଇଙ୍ଗିତ ଦେଇ ନଟନଟୀ ଲୋକପ୍ରିୟ ଯାତ୍ରା କନସର୍ଟରେ ସଙ୍ଗୀତ ଗାନ କରିଛନ୍ତି । ପୁଣି 'ଦାର୍ଢ୍ୟତାଭକ୍ତି'ର ଉଦ୍ଧୃତିକୁ ନଟ ଓ ନଟୀ ଜଣକ ପରେ ଜଣେ ଗାନ କରି ପରିବେଶର ମହତ୍ତ୍ୱ ବୃଦ୍ଧି କରିଛନ୍ତି । ନିୟତିଙ୍କର ନୃତ୍ୟ ଓ ସଂଳାପ ସହିତ ନିଜ ଚାହାଣିରେ ଓ ମୁଦ୍ରାରେ ଶୁଭ ଓ ଅଶୁଭ ସଙ୍କେତ ବୁଣିବାର ଅଭିନୟ୍ ବେଶ୍ ଅର୍ଥଦ୍ୟୋତକ । ବିଲ୍ୱମଙ୍ଗଳଙ୍କର ଈଶ୍ୱରପ୍ରାପ୍ତି ପାଇଁ ଆବେଗ ଓ ଭକ୍ତି ଯେତିକି ଗୁରୁତ୍ୱପୂର୍ଣ୍ଣ ଚିନ୍ତାମଣି ପ୍ରତିଥିବା ଆବେଗ ମଧ୍ୟ ତତୋଽଧିକ ଆକର୍ଷଣୀୟ । ପ୍ରବୃତ୍ତିର ପଙ୍କ ଓ ଆବର୍ଜନାରୁ ସ୍ୱର୍ଗୀୟ ସୁରଭିରେ ମଣ୍ଡିତ ଇଲାକାକୁ ଯାତ୍ରା ହିଁ ନାୟିକା ଚିନ୍ତାମଣିଠାରୁ ପ୍ରଭୁ ଚିନ୍ତାମଣିଙ୍କ ପାଦ ପର୍ଯ୍ୟନ୍ତ ଯାତ୍ରା । 'ଦାର୍ଢ୍ୟତାଭକ୍ତି'ର ବିଲ୍ୱମଙ୍ଗଳ ଈଶ୍ୱରପ୍ରାପ୍ତି ପରେ ଚିନ୍ତାମଣିକୁ ଗୁରୁଭାବରେ ଗ୍ରହଣ କରିଛନ୍ତି ମାତ୍ର ନାଟକରେ ବିଲ୍ୱମଙ୍ଗଳ ଚିନ୍ତାମଣିଙ୍କୁ ଯେଉଁ ଦିବ୍ୟଜ୍ଞାନର ବାର୍ତ୍ତା ଦେଇଛନ୍ତି ତାହାକୁ ଚିନ୍ତାମଣି ଗ୍ରହଣ କରିପାରିନାହାନ୍ତି । କାଳାତୀତ ରୂପାତୀତ ହୋଇ କୃଷ୍ଣଭକ୍ତି ସ୍ରୋତରେ ନିଜକୁ ଭସାଇ ଦେବା ଭଳି ଚିନ୍ତାରେ ସେ ବିଶ୍ୱାସ କରନ୍ତି ନାହିଁ କାରଣ ଜୀବନର ଚରମ ଉପଲବ୍ଧି ଭିତରେ ସେ ବୁଝିସାରିଥାଆନ୍ତି ଯେ ଶୁଭ ଅଶୁଭ, ଯିବା ଆସିବା, ଶେଷ ଓ ଆରମ୍ଭ ସବୁ ମଣିଷ ମନର କଳ୍ପନା । ତେଣୁ ସେ ସମାହିତ ଚିତ୍ତରେ ବିଲ୍ୱମଙ୍ଗଳଙ୍କୁ ଫେରାଇ ଦେଇଛନ୍ତି । ତାଙ୍କ ପାଇଁ ହସ କାନ୍ଦ ସମତୁଲ ହୋଇଯାଇଛି । ବିଲ୍ୱମଙ୍ଗଳ ମଧ୍ୟ ମୁକ୍ତିର ଦ୍ୱାରଦେଶରୁ କାହିଁକି ତାଙ୍କୁ ଖୋଜିବାର ଆଗ୍ରହ ନେଇଆସିଥିଲେ ତାହା ବୁଝି ନ ପାରି ଶୋକରେ ମୁହ୍ୟମାନ ହୋଇପଡ଼ିଛନ୍ତି ।

ଏହି ନାଟକର ଭାଷା ପରିବେଶ ଅନୁସାରୀ । ମାତ୍ର ସୂତ୍ରଧାର କଣ୍ଠରେ ସେ କୁହାଇଛନ୍ତି "× × × ଜାଣିଛ ନାଁ, ନାଟକ ଦେଖିବାପାଇଁ ଲୋକେ ଆଜିକାଲି କେତେ ବିମୁଖ । ଟି.ଭି., ଭି.ଡ଼ି.ଓ ସିନେମା ଏସବୁ ନାଟକକୁ ତ ଖାଇଲା, ତମେ ଦି'ଟା ମଝିରେ ମଝିରେ ଏମିତି ଆସି ଯଦି ପାଲା ଲଗାଅନାଁ... ଲୋକେ ସବୁ ଉଠିଯିବେ । ପଇସା ଜମା ଉଠିବନି" । ଏହା ସାଂପ୍ରତିକ କାଳରେ ନାଟକର ସ୍ଥିତି, ଯିଏ ପ୍ରତିମୁହୂର୍ତ୍ତରେ ଏକାଧିକ ଗଣମାଧ୍ୟମ ସହିତ ମୁକାବିଲା କରି ବଞ୍ଚିବାକୁ ଚେଷ୍ଟା କରୁଛି । ତେଣୁ ନୃତ୍ୟ ସଙ୍ଗୀତ ସହିତ କଥାବସ୍ତୁର ସୁ ସମନ୍ୱୟ କରିବାକୁ ଏଠାରେ ଚାହିଁଛନ୍ତି ନାଟ୍ୟକାର ।

ପ୍ରାରମ୍ଭରୁ ଦର୍ଶକୀୟ ସହାନୁଭୂତି ଲାଭରେ ସଫଳ ହୋଇଥିବା ଏହି ନାଟକ ମୁଦ୍ରିତ ହେବାପରେ ଓଡ଼ିଆ ନାଟକର ସ୍ଥାୟୀ ପରିସରଭୁକ୍ତ ହେବ ଓ ସୁଧୀ ପାଠକ, ଦର୍ଶକ ଓ ଆଲୋଚକମାନଙ୍କର ଦୃଷ୍ଟିଆକର୍ଷଣ କରିବ । ବିଷାଦ ବୃତ୍ତ ଭିତରୁ ବାହାରି ମଙ୍ଗଳ ଓ ଅମଙ୍ଗଳକୁ ଏକତ୍ର ଆମୃଷ୍ଟ କରିଥିବା ଏହି ବିଲ୍ୱମଙ୍ଗଳ ଚରିତ୍ରଟି ପରମ୍ପରାର ସୁବାସ ସହିତ ପୁରୋଦୃଷ୍ଟିର ଆଲୋକ ବିଞ୍ଚି ଓଡ଼ିଆ ନାଟକକୁ ବେଶ୍ କେଇପାଦ ଆଗେଇ ନେବ ଓ ନାଟ୍ୟକାରଙ୍କର ଉତ୍ତରିତ ଜୀବନଦୃଷ୍ଟିର ପ୍ରତିଭୂ ପାଲଟି ମୂଲ୍ୟବୋଧର କେତନ ତୋଳି ଧରିବାରେ ଯେ ସମର୍ଥ ହେବ, ଏହା କାମନା କରିବା ଯଥାର୍ଥ ।



## ନାଟକର କେତୋଟି ସ୍ମରଣୀୟ ଫଟୋଗ୍ରାଫ୍

### ପ୍ରଥମ ଅଭିନୟ ରଜନୀ



ନଟ ଓ ନଟୀ ଭୂମିକାରେ – ଶ୍ୱେତପଦ୍ମା ଓ ସୁଷମା



ବିଲ୍ୱମଙ୍ଗଳ ଓ ଚିନ୍ତାମଣି ଭୂମିକାରେ – ସାଗରିକା ଓ ଅଂଶୁପ୍ରିୟା



ବିଲ୍ୱମଙ୍ଗଳ ଓ ସୁଚେତା ଭୂମିକାରେ – ସାଗରିକା ଓ ମମତା



ବିଲ୍ୱମଙ୍ଗଳ ଓ ଗୋପାଳ ଭୂମିକାରେ – ସାଗରିକା ଓ ମାୟା

## ଦ୍ୱିତୀୟ ଅଭିନୟ ରଜନୀ



ନୃତ୍ୟ ପରିବେଷଣରତ, ନଟ ଓ ନଟୀ ଭୂମିକାରେ
ସୁସ୍ମିତା ଓ ଶୁଭଶ୍ରୀ, ସୂତ୍ରଧାର ଭୂମିକାରେ ବିଶ୍ୱନାଥ



ବିଲ୍ୱମଙ୍ଗଳ ଭୂମିକାରେ ନାରାୟଣ, ଚିନ୍ତାମଣି ଭୂମିକାରେ ଅମିତା ଓ
ସନାତନ ଭୂମିକାରେ ଶୁଭ୍ରାଂଶୁ



ଚଣ୍ଡବାହୁ, ରସଶେଖର ଓ ବିଲ୍ୱମଙ୍ଗଳ ଭୂମିକାରେ
ଚିତ୍ରସେନ, ତପନ କୁମାର ଓ ନାରାୟଣ



ରସଶେଖର ଓ ସନାତନ ଭୂମିକାରେ ତପନ କୁମାର ଓ ଶୁଭ୍ରାଂଶୁ



ନୃତ୍ୟ ପରିବେଷଣରତ, ନଟ ଓ ନଟୀ ଭୂମିକାରେ
ସୁସ୍ମିତା ଓ ଶୁଭଶ୍ରୀ



ବିଲ୍ୱମଙ୍ଗଳ, ସନାତନ ଓ ଚିନ୍ତାମଣି ଭୂମିକାରେ – ନାରାୟଣ, ଶୁଭ୍ରାଂଶୁ ଓ ଅମିତା

# ନାଟ୍ୟକାରଙ୍କର ଅନ୍ୟାନ୍ୟ ନାଟକ

- ଫସିଲ୍‌ର ନିଦ୍ରାଭଂଗ
- କଂସର ଆତ୍ମା
- କ୍ଷୁଧିତ ସରୀସୃପ
- ବିଷାଦ ବୃତ୍ତର କାହାଣୀ
- କର୍ଣ୍ଣ
- ଶୋଣିତ ସ୍ୱାକ୍ଷର
- ଏଇଯେ ସୂର୍ଯ୍ୟ ଉଏଁ
- ପ୍ରଳୟ ପରେ
- ନୀଳଶୈଳ
- ତୃତୀୟ ପର୍ବ
- ଲୁହାର ମଣିଷ
- ଫୋନ୍ ଡାଏରୀ
- କାରାଗାରର କାହାଣୀ
- ପକାପଇସା ଦେଖ୍ ତାମ୍‌ସା
- ମାଫିଆ
- ଏକ ପରାଜିତ ନାୟକର ସ୍ୱଗତୋକ୍ତି
- ନଷ୍ଟନୀଡ଼ର ଉପକଥା
- ସୋସିଆଲ ଟ୍ରାଜେଡ଼ିର ତିନୋଟି ନାଟକ
- ସୁନ୍ଦରୀ ପ୍ରତିଯୋଗିତା ଓ ଅନ୍ୟାନ୍ୟ ନାଟିକା





ସାଂପ୍ରତିକ ଓଡ଼ିଆ ନାଟ୍ୟଧାରାର ଅଗ୍ରଗଣ୍ୟ ନାଟ୍ୟକାର ଭାବରେ ସ୍ୱୀକୃତ ବିଜୟ କୁମାର ଶତପଥୀ । ଆମର ପରମ୍ପରା, ଐତିହ୍ୟ, ମିଥ୍ ଓ କିମ୍ବଦନ୍ତୀ ଗୁଡ଼ିକରୁ ସେ ଆଧୁନିକତାର ସଂଧାନ କରନ୍ତି । ସେଥିପାଇଁ ସେଗୁଡ଼ିକ ନବମୂଲ୍ୟବୋଧ ମଣ୍ଡିତ ହୋଇ ଓ ଅର୍ଥପୂର୍ଣ୍ଣ ହୋଇ ପ୍ରକାଶିତ ହୁଅନ୍ତି ତାଙ୍କର ନାଟକ ଗୁଡ଼ିକରେ । ସୁଗଠିତ କଥା ଭୂମି ଉପରେ ନାଟ୍ୟକାର ଶତପଥୀ ଯେଉଁ ନୂତନ ନାଟ୍ୟ ଶୈଳୀ ନିର୍ମାଣ କରନ୍ତି ତାର ଶିଳ୍ପରୀତି କେବଳ ପ୍ରଥାବଦ୍ଧତାକୁ ଅସ୍ୱୀକାର କରେ ନାହିଁ, ତାଙ୍କ ନାଟକ ଗୁଡ଼ିକର ସୁତୀକ୍ଷ୍ଣ ବକ୍ତବ୍ୟ ପାଠକ ଓ ଦର୍ଶକର ହୃଦୟକୁ ମଧ୍ୟ ପ୍ଲାବିତ କରିପାରେ ତାର ଆକର୍ଷଣୀ ଶକ୍ତିରେ । ଲୋକ ଉପାଦାନ ପୁଣି ଲୋକପ୍ରିୟ ଉପାଦାନ ଗୁଡ଼ିକର ସଂଯୋଗରେ ଗଠିତ ଏକ ନୂତନ ନାଟ୍ୟରୀତିର ତଥା ଉତ୍ତର ଆଧୁନିକ ନାଟ୍ୟଧାରାର ସଂସ୍ଥାପକ ଭାବରେ ଆତ୍ମପ୍ରକାଶ କରନ୍ତି ଏହି ନାଟ୍ୟକାର ଉଣେଇଶି ଶହ ସତୁରୀ ପରବର୍ତ୍ତୀ କାଳରେ ଓ ତାଙ୍କର ଏହି ନୂତନ ନାଟ୍ୟଚିନ୍ତା ସଂପ୍ରସାରିତ ହୋଇ ସମୃଦ୍ଧ କରେ ଉଣେଇଶି ଶହ ଅଶି ପରର ଓଡ଼ିଆ ନାଟ୍ୟ ସାହିତ୍ୟକୁ । ନାଟ୍ୟକାର ଶ୍ରୀ ଶତପଥୀଙ୍କ ଦୃଷ୍ଟିରେ ନାଟକ କେବଳ ମନୋରଞ୍ଜନ ପାଇଁ ଉଦ୍ଦିଷ୍ଟ ନୁହେଁ, ଏହା ବ୍ୟାପକତର ଜୀବନ ବୋଧକୁ ପ୍ରତ୍ୟକ୍ଷ କରାଏ ଦୃଶ୍ୟରୂପ ମାଧ୍ୟମରେ । ଏହା ସମାଜ ପରିବର୍ତ୍ତନର ଇଙ୍ଗିତ ଦିଏ କଳାତ୍ମକ ରୀତିରେ ।

... ପ୍ରକାଶକ


ଅଗ୍ରଦୂତ
କଟକ-୨